


ବିଜ୍ଞାନ ତରଙ୍ଗର ଏହି ବହି ବିଶେଷାଙ୍କଟି ୧୯୯୬-୯୭ର *ଜାତୀୟ ପରିବେଶ ସଚେତନତା ଅଭିଯାନ*, (National Environment Awareness Campaign, 1996-97) ପାଇଁ ଏକ ସାଧନ ସାମଗ୍ରୀ ରୂପରେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କର ପରିବେଶ ବିଭାଗର ସହାୟତାରେ ପ୍ରକାଶିତ ।




# ଗଛବରଧ

ଗଛଲତାଙ୍କ ବିଷୟରେ ଆଗ୍ରହ ବଢାଇବା ପାଇଁ ଓ
ଗଛ ଚିହ୍ନିବାରେ ସହାୟକ ହେବା ପାଇଁ ଏକ ପ୍ରବେଶିକା

ନିଖିଳ ମୋହନ ପଟ୍ଟନାୟକ

ସୃଜନିକା
ଜାଗମରା, ଡାକ. ଖଣ୍ଡଗିରି,
ଭୁବନେଶ୍ୱର ୭୫୧ ୦୩୦
ଦୂରଭାଷ ୪୭୦ ୬୬୪

# ଗଛବଇଦ

(ସାଧାରଣ ଔଷଧଗଛ ପରିଚୟକ)

*ସଂକଳକ*

ନିଖିଳ ମୋହନ ପଟ୍ଟନାୟକ

*ପ୍ରକାଶକ / ବିତରକ*

ସୃଜନିକା

ଜାଗମରା, ଭୁବନେଶ୍ୱର ୭୫୧ ୦୩୦

ଦୂରଭାଷ ୪୭୦ ୬୬୪

*ଅକ୍ଷର, ଅଙ୍ଗସଜ୍ଜା ଓ କଳା*

ପୁଷ୍ପଶ୍ରୀ ପଟ୍ଟନାୟକ

ଲିପିଶ୍ରୀ କମ୍ୟୁନିକେସନସ୍

ଜାଗମରା, ଭୁବନେଶ୍ୱର ୭୫୧ ୦୩୦

*ମୁଦ୍ରଣ*

ଶୋଭନ,

ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ମୂଲ୍ୟ: ପନ୍ଦର ଟଙ୍କା

ପ୍ରକାଶକାଳ: ମଇ ୧୯୯୭

# *The Healer Plants*

(An introduction to common medicinal plants)

*Compilation*

Nikhil Mohan Pattnaik

*Publisher / Distributor*

Srujanika

Jagamara, P.O. Khandagiri

Bhubaneswar 751 030,

Tel:470 664

*DTP, Layout & Artwork*

Puspashree Pattnaik

Lipishree Communications

Jagamara, Bhubaneswar

*Printing*

Shovan,

Acharya Bihar, Bhubaneswar

Price: Fifteen Rupees

Publication Date: May 1997

## ବହିଟିର ଆଶା

ନିଜ ଘରିପାଖର ଜିନିଷ ଓ ଘଟଣା ପ୍ରତି ଆଗ୍ରହ ବଢାଇବା ଏବଂ ସେସବୁକୁ ନେଇ ଶିକ୍ଷା ଓ ଜୀବନର ମୂଳଦୁଆ ପକାଇବା ହେଉଛି ସୃଜନିକାର ମୂଳ ଚିନ୍ତା। ଚନ୍ଦ୍ର, ତାରା, ମାଟି, ଗୋଡି, ଗଛଲତା ଭଳି ନିତିଦେଖା ଜିନିଷ ପାଇଁ ଆଗ୍ରହ ଆସିଲେ ସେସବୁ ଉପରେ ଅନେକ ପ୍ରଶ୍ନ ଆସିବ ଓ ପ୍ରଶ୍ନର ଉତ୍ତର ଖୋଜାରୁ ସେଥି ସହିତ ସମ୍ପର୍କ ଓ ବୁଝାମଣା ବଢିବ। ପ୍ରଶ୍ନ ଉଠାଇବା ଓ ହାତମନ ଲଗାଇ ଉତ୍ତର ଖୋଜିବାରୁ ଯେଉଁ ଶିକ୍ଷା ଆସିବ ତାହା ଅଧିକ ପ୍ରତ୍ୟକ୍ଷ ଓ ଗଭୀର ହେବ। ଶିକ୍ଷାନୁଷ୍ଠାନର ବାହାରେ, ଖେଳଖୁସି ଭିତରେ ଏହା ହୋଇ ପାରିବ, ତେଣୁ ତାହାର ପ୍ରଭାବ ମଧ୍ୟ ଦୀର୍ଘସ୍ଥାୟୀ ହେବ।

ଏହି ଧାରାରେ ସହାୟକ ହେବା ପାଇଁ *ଗଛବଇଦ* ପୁସ୍ତିକାର ଜନ୍ମ। ଘରିପାଖର ଛୋଟବଡ, ଫସଲ ବା ଅରମା, ଘରେଇ ବା ଜଙ୍ଗଲୀ ସବୁ ପ୍ରକାରର ଗଛର ଯେ କିଛି ବିଶେଷ ଗୁଣ ରହିଛି ସେ ବିଷୟରେ ଚେତେଇ ଦେବା ଏହି ବହିଟିର ଲକ୍ଷ୍ୟ। ଏ ଦିଗରେ ସଚେତନ ହେଲେ ହୁଏତ ଜଣେ ଆଖପାଖର ଗଛଲତାଙ୍କୁ ଚିହ୍ନିବାକୁ ଚେଷ୍ଟା କରିବ ଏବଂ ସେଥିରେ ଏ ବହିଟିକୁ ସାଥି କରିବ। ଘରେ ବସି ପଢିବା ବଦଳରେ ଏ ବହିଟି ଧରି ବାହାରେ ବୁଲିବା ନିଶ୍ଚୟ ବେଶି ମଜା ଓ ଫଳ ଦେବ।

ସୃଜନିକାର ସମସ୍ତେ ଏହି ବହି ତିଆରିରେ ଲାଗିଛନ୍ତି। ସବୁଠାରୁ ବେଶି ମାତିଛନ୍ତି ନିଜ ପସନ୍ଦର ଅରମା ଗଛ ସବୁ ଉପାଡି ଆଣିଥିବା ପିଲାମାନେ ଓ ତାକୁ ଚିହ୍ନଟ କରିଥିବା ପୁରୁଖା ବୁଢାମାନେ। ସେମାନଙ୍କ ଚେଷ୍ଟାରୁ ଆମ ଧାରେ ବଢୁଥିବା ଛୋଟ ଗଛଗୁଡିକ ଏହି ବହି ପାଇଁ ଆଗ ବଛାଯାଇଛି। ଦଳଗତ ଭାବରେ ଏଭଳି ମଜାକାମ ଅନ୍ୟ ସବୁଠି ହେଲେ ବହି ଓ କାମର ପ୍ରକୃତ ମୂଲ୍ୟ ଉଠିବ। ଏଥିପାଇଁ ଅଣ୍ଟା ଭିଡୁଥିବା ସାଥିମାନଙ୍କୁ ଆମର ଶୁଭେଚ୍ଛା ଜଣାଉଛୁ ଏବଂ ସମସ୍ତଙ୍କର ମତାମତକୁ ଅନାଇ ରହୁଛୁ।

ବୁଦ୍ଧ ପୂର୍ଣ୍ଣିମା (ମଇ ୧୯୯୭)

ସୃଜନିକା କର୍ମୀଦଳ

# ଏ ବହିରେ ରହିଛି...

# ଅକ୍ଷର କ୍ରମରେ ଉଦ୍ଭିଦସୂଚୀ

# ଗଛ ଔଷଧର କଥା

ପ୍ରାଣୀ ଓ ଉଦ୍ଭିଦ ଆମର ଜୀବଜଗତର ଦୁଇ ମୁଖ୍ୟ ଅଂଶ। ସଂଖ୍ୟା ଓ ଜୀବନର ଜଟିଳତା ଦୃଷ୍ଟିରୁ ପ୍ରାଣୀମାନେ ଆଗୁଆ ମନେ ହୁଅନ୍ତି। କିନ୍ତୁ ଆତ୍ମନିର୍ଭରଶୀଳତା ଦୃଷ୍ଟିରୁ ଉଦ୍ଭିଦ ବା ଗଛଲତା ନିଶ୍ଚୟ ଆମଠାରୁ ଅନେକ ଆଗୁଆ। ବଂଶ ବିସ୍ତାର ପାଇଁ ପ୍ରାଣୀମାନେ ଗଛଲତାଙ୍କୁ ସାହାଯ୍ୟ କରନ୍ତି ସତ; କିନ୍ତୁ ଏହା ବିନା ମଧ୍ୟ ଉଦ୍ଭିଦଜଗତ ତିଷ୍ଠି ରହିପାରିବ। ପ୍ରକୃତରେ ପୃଥିବୀରେ ପ୍ରାଣୀମାନେ ଆସିବାର ବେଶ୍ ଆଗରୁ ଉଦ୍ଭିଦ ଜନ୍ମ ନେଇଛି। ନିଜେ ନିଜେ ଖାଦ୍ୟ ତିଆରି କରିପାରୁଥିବାରୁ ସେମାନେ ଏକଲା ବଞ୍ଚି ବଢ଼ି ପାରିଛନ୍ତି। ଖାଲି ସେତିକି ନୁହେଁ, ଅଗ୍ରଜ ଉଦ୍ଭିଦ ଆମ ଭଳି ପ୍ରାଣୀମାନଙ୍କର ଆସିବା ପାଇଁ ବାଟ ମଧ୍ୟ ସଫା କରିଛନ୍ତି। ପୃଥିବୀର ବାୟୁମଣ୍ଡଳରେ ଅମ୍ଳଜାନ ଭରିବା କାମ ଗଛମାନେ ହିଁ କରିଛନ୍ତି।

ଖାଦ୍ୟ ପାଇଁ ସବୁ ପ୍ରାଣୀ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସେହି ଉଦ୍ଭିଦଜଗତ ଉପରେ ନିର୍ଭର କରନ୍ତି। ଖାଲି ଖାଦ୍ୟ ପାଇଁ ନୁହେଁ, ଘର ସଂସାର କରିବା ପାଇଁ ବି ପ୍ରାଣୀମାନଙ୍କୁ ସେ ଆଶ୍ରା ଯୋଗାଏ। ଆଉ ମଣିଷ ପାଇଁ ଏହି ନିର୍ଭରଶୀଳତା ଅନେକ ବେଶି। ଦାନା, କନା ଓ ଛପର ଭଳି ଜରୁରୀ ଜିନିଷ ତ ସେ ଗଛଠାରୁ ପାଏ। ତା'ଛଡ଼ା ପାଟି ସୁଆଦ, ମଉଜ ମଜଲିସ୍ ଓ ଦେହର

ଭଲମନ୍ଦ କଥା ବୁଝିବା ପାଇଁ ମଧ୍ୟ ମଣିଷ ଗଛକୁ ଅନାଇ ରହେ । ସୁଆଦିଆ ମସଲା, ମିଠା ପାଇଁ ଚିନିଗୁଡ଼, ଢୋଲ ବା ବଇଁଶୀର କାଠ, ମୁଣ୍ଡ ଛଡାଇବା ପାଇଁ ଇଠାଫଳ, ଦେହ ପାଇଁ ହଳଦୀ ଭଳି କେତେ ଜିନିଷ ସେହି ଉଦ୍ଭିଦମାନଙ୍କଠାରୁ ମିଳେ । ତେବେ ମଣିଷ ପାଇଁ ଗଛର ସବୁଠାରୁ ବଡ କାମ ହେଉଛି ତା'ର ଚଇଦ ପଣିଆ । ମୁଣ୍ଡ ପେଟ ବଥା, ଜର ଝାଡା ଠାରୁ ଆରମ୍ଭ କରି ଯକ୍ଷ୍ମା କାମଳ ଆଦି ସବୁ ରୋଗ ପାଇଁ ଓଷଦ ରହିଛି ଗଛଲତାଙ୍କ ଦେହରେ ।

## ଗଛର ଗୁଣ ଚିହ୍ନା

ମଣିଷ ପ୍ରଥମେ ଗଛରେ ଔଷଧ ଥିବା କଥା କିପରି ଜାଣିଲା ଓ ନିର୍ଦ୍ଦିଷ୍ଟ ଗୁଣର ଏତେ ଗଛ କିପରି ଚିହ୍ନିଲା ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଅନୁମାନ କରାଯାଏ ଯେ ଏହା ନିଶ୍ଚୟ ତା'ର ଅନୁଭୂତିରୁ ଆସିଥିବ । ଜୀବଜନ୍ତୁଙ୍କୁ ଲକ୍ଷ୍ୟ କରି ସେ କିଛି ଜାଣିଥିବ । କେବେ ଅସୁସ୍ଥ ଥିଲାବେଳେ ଦୈବାତ୍ କିଛି ଗଛପତ୍ର ଖାଇ ସେ ଉପକାର ପାଇଥିବ । ହଜାର ହଜାର ବର୍ଷର ଅନୁଭୂତିକୁ ଏକାଠି କରି, କିଛି ପରୀକ୍ଷା ନିରୀକ୍ଷା କରି ସେ ଔଷଧ ଗଛର ତାଲିକାକୁ ପକ୍କା କରିଥିବ ।

ଦେହରେ କଷ୍ଟ କମାଇବା ପାଇଁ ଗଛଲତାଙ୍କ ସାହାଯ୍ୟ ଲୋଡିବା ମଣିଷ ପାଇଁ ବେଶ୍ ସ୍ୱାଭାବିକ ହୋଇଥିବ । କାରଣ ବଣଜଙ୍ଗଲରେ ଭରା ଆଦିମ ପୃଥିବୀରେ ସବୁଆଡେ ଗଛଲତା ରହିଥିବେ । ସେମାନଙ୍କର ସଂଖ୍ୟା ଓ ପ୍ରକାର ଖୁବ୍ ବେଶି ହୋଇଥିବ । ରୂପରୁ ତାଙ୍କୁ ଚିହ୍ନିବାଟା କଷ୍ଟ ହେଉନଥିବ । ନିଜ ଜାଗାରୁ ଘୁଞ୍ଚୁ ନଥିବାରୁ ଓ ପ୍ରାୟ ସବୁବେଳେ ହାତ ପାହାନ୍ତାରେ ମିଳୁଥିବାରୁ

ଗଛବଇଦ, ସୃଜନିକା, ୧୯୯୭

ମଣିଷ ଏମାନଙ୍କୁ ଆପେ ଆପେ ଆଦରି ନେଇଥିବ। ଏହି ଭାବରେ ପୃଥିବୀର ସବୁ ଅଞ୍ଚଳର ମଣିଷ ବିଭିନ୍ନ ରୋଗ ପାଇଁ ତାଙ୍କ ଆଖପାଖର ଉପକାରୀ ଉଦ୍ଭିଦଗୁଡ଼ିକୁ ଚିହ୍ନଟ କରିଥିଲେ। ତେବେ ବିଶେଷ ଗୁଣର ଉଦ୍ଭିଦ ଚିହ୍ନିବାରେ ଓ କାମରେ ଲଗାଇବାରେ ଅନ୍ୟମାନଙ୍କ ତୁଳନାରେ ଭାରତୀୟ ସଭ୍ୟତା ଖୁବ୍ ଆଗୁଆ ଥିଲା ବୋଲି ଜଣାଯାଏ। ଅନ୍ୟ କୌଣସି ଅଞ୍ଚଳରେ ଭାରତ ଭଳି ଏତେ ସଂଖ୍ୟାର ଔଷଧ ଗଛର ବ୍ୟବହାର ଜଣା ନଥିଲା।

## ବନୌଷଧିର ଇତିହାସ

ଉଦ୍ଭିଦ ଔଷଧ ବା ବନୌଷଧି ବିଷୟରେ ସବୁଠାରୁ ପୁରୁଣା ତଥ୍ୟ ମିଳେ ବେଦରୁ। ବେଦର ସଂକଳନ ଖ୍ରୀଷ୍ଟପୂର୍ବ ପ୍ରାୟ ୪୫୦୦ ବା ଆଜିକୁ ୬୫୦୦ ବର୍ଷ ତଳେ ଆରମ୍ଭ ହୋଇଥିଲା ବୋଲି ହିସାବ କରାଯାଏ। ଆହୁରି ମଧ୍ୟ ଜଣାଯାଏ। ଯେ ଚାରି ବେଦ ପୂରା ହେବାପାଇଁ ପ୍ରାୟ ୩୦୦୦ ବର୍ଷ (ଖ୍ରୀ.ପୂ. ୪୫୦୦ ରୁ ଖ୍ରୀ.ପୂ. ୧୬୦୦) ଲାଗିଥିଲା। ଏହା ଭିତରେ ମଣିଷର ଦେହ, ମନ, ରୋଗ ଓ ଚିକିତ୍ସା ଆଦିର କଥା ବିଶେଷ ଆଗେଇ ପାରିଥିଲା ଓ ଗୋଟିଏ 'ଉପବେଦ'ର ରୂପ ନେଇଥିଲା।

ଖ୍ରୀଷ୍ଟପୂର୍ବ ୨୫୦୦ ବେଳକୁ ବେଦର ଏହି ବିଭାଗ 'ଆୟୁର୍ବେଦ' ବା 'ଜୀବନ ବିଜ୍ଞାନ' ନାଁରେ ପରିଚିତ ହେଲା। ବିଭିନ୍ନ ସାଧକଙ୍କର ଚେଷ୍ଟାରେ ଏହା ଆହୁରି ଆଗେଇଲା। ସେମାନଙ୍କ ଭିତରେ ବିଶେଷ ଥିଲେ ଚରକ (ଖ୍ରୀ.ପୂ. ୧୦୦୦ ସମୟର) ଓ ସୁଶ୍ରୁତ (ଖ୍ରୀ.ପୂ. ପ୍ରାୟ ୮୦୦)। ଏମାନଙ୍କର ଦୁଇ ଅମର ଗ୍ରନ୍ଥ ଚରକ ଓ ସୁଶ୍ରୁତ ସଂହିତାରୁ ଆୟୁର୍ବେଦ ଓ ବନୌଷଧି ଉପରେ

ଅନେକ ତଥ୍ୟ ମିଳିଥାଏ। ଏମାନଙ୍କ ପରେ ଆତ୍ରେୟ, ଜୀବକ ଓ କଶ୍ୟପ (ଖ୍ରୀ.ପୂ. ୬୦୦), ଭୃଗୁ (ଖ୍ରୀ.ପୂ. ୫୦୦), ପାତଞ୍ଜଳୀ (ଖ୍ରୀ.ପୂ. ୨୦୦), ନାଗାର୍ଜୁନ (ଖ୍ରୀ.ପୂ. ୧୦୦) ଓ ଆହୁରି ଅନେକ ସାଧକ ଆୟୁର୍ବେଦ ଓ ଭାରତୀୟ ଚିକିତ୍ସା ଧାରାକୁ ଉନ୍ନତ କରିଥିଲେ। ମଣିଷର ସବୁଠାରୁ ପୁରୁଣା ଜୀବନ ଓ ଚିକିତ୍ସା ବିଜ୍ଞାନ ଆୟୁର୍ବେଦର ବିକାଶ ପ୍ରାୟ ୧୦୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଲାଗି ରହିଲା। ଏହି ସମୟରେ ମହାବୈଦ୍ୟ ଭାଗବତ (୭ମ ଶତାବ୍ଦୀ) ଆୟୁର୍ବେଦର ସବୁ ତଥ୍ୟ ଓ ଧାରାକୁ ଏକାଠି କରି 'ଅଷ୍ଟାଙ୍ଗ ହୃଦୟ ସଂହିତା' ଲେଖିଲେ। ଏଥିରେ ସେ ଆୟୁର୍ବେଦକୁ ଆଠଟି ବିଭାଗରେ ବର୍ଣ୍ଣନା କରିଥିଲେ। ଏହି ବିଭାଗଗୁଡିକ ଏବେ ମଧ୍ୟ ଚଳି ଆସୁଛି।

ସେହି ଏକା ସମୟରେ ପୃଥିବୀର ଅନ୍ୟ ଅଞ୍ଚଳରେ ମଧ୍ୟ ସମାଜ ଓ ବିଜ୍ଞାନ ଆଗେଇ ଚାଲିଥିଲା। ମଣିଷର ଦେହକୁ ବୁଝିବା ଓ ରୋଗର ଚିକିତ୍ସା କରିବା ପାଇଁ ଅନେକ ଧାରା ମଧ୍ୟ ବାହାରୁଥିଲା। ଚୀନ ଦେଶରେ ପ୍ରାୟ ୪୦୦ ପ୍ରକାରର ବନୌଷଧିର ବ୍ୟବହାର ଚଳିଲା। ଗ୍ରୀକ୍ ସଭ୍ୟତାରେ ଦେହର ଗଠନ ଓ ଶଲ୍ୟ ଚିକିତ୍ସା ବିଷୟରେ ଅନେକ କଥା ଜଣାଥିଲା, କିନ୍ତୁ ବନୌଷଧିର ବିଶେଷ ଉପଯୋଗ ନଥିଲା। ଏହା ଭିତରେ ଆଲେକ୍‌ଜାଣ୍ଡରଙ୍କ ଆକ୍ରମଣ ଫଳରେ ଭାରତୀୟ ସଭ୍ୟତା ଓ ଗ୍ରୀକ୍ ସଭ୍ୟତା ଭିତରେ ଯୋଗାଯୋଗ ବଢ଼ିଲା। ଉଭୟ ଆୟୁର୍ବେଦ ଓ ଗ୍ରୀସ୍‌ଦେଶର ବିଜ୍ଞାନ ଏଥିରୁ ଲାଭ ପାଇଲେ।

## ବନୌଷଧିର ପ୍ରସାର

ଏହାର ପରେ ପରେ ମଧ୍ୟପ୍ରାଚ୍ୟରେ ଇସ୍‌ଲାମ ସଭ୍ୟତା ମୁଣ୍ଡ ଟେକିଲା । ସେହି ଆରବ ସଭ୍ୟତାରେ କଳା ଓ ବିଜ୍ଞାନ ବିଶେଷ ସ୍ଥାନ ପାଇଲା । ସେମାନେ ପୃଥିବୀର ବିଭିନ୍ନ ସଭ୍ୟତାର ସାରକଥାକୁ ଏକାଠି କରି ଆଗେଇ ନେବାରେ ଲାଗି ପଡ଼ିଲେ । ଦଶମ-ଏକାଦଶ ଶତାବ୍ଦୀରେ *ଆଭିସେନା* ଆରବ ଚିକିତ୍ସା ବିଜ୍ଞାନରେ ବ୍ୟାପକ ଉନ୍ନତି ଆଣିଲେ । ତାଙ୍କର ଏହି କାମ ଫଳରେ *ୟୁନାନୀ* ପଦ୍ଧତି ନାମରେ ଗୋଟିଏ ନୂଆ ଚିକିତ୍ସା ବିଜ୍ଞାନ ରୂପ ନେଲା । ପରେ ଏହି ଆରବ ଜ୍ଞାନକୁ ଆଧାର କରି ପାଶ୍ଚାତ୍ୟ ବିଜ୍ଞାନ ଗଢ଼ି ଉଠିଲା । ଏହି ଭାବରେ ଗଣିତ ଓ ଆକାଶ ବିଜ୍ଞାନ ସହିତ ଶରୀର ଓ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ପ୍ରାଚୀନ ଭାରତର ଛାପ ସାରା ପୃଥିବୀରେ ଖେଳାଇ ହୋଇଗଲା । ଏହାର ଆଉ ଗୋଟିଏ ଫଳ ହେଲା ଯେ ସବୁ ପ୍ରକାରର ଚିକିତ୍ସା ଧାରାରେ ବନୌଷଧି ପାଇଁ ଗୋଟିଏ ବିଶେଷ ସ୍ଥାନ ରହିଲା । ସମୟ କ୍ରମେ ଏହାର ରୂପ ବଦଳିଲା ଓ ତାହା ଅଧିକ ଉନ୍ନତ ହେଲା । ଉଦ୍ଭିଦରୁ ବାହାରୁଥିବା ଅନେକ ରାସାୟନିକ ଔଷଧ ୟୁରୋପରେ ଚଳିଲା । ଅଷ୍ଟାଦଶ ଶତାବ୍ଦୀରେ ୟୁରୋପରେ *ହୋମିଓପାଥି* ଚିକିତ୍ସା ଧାରା ଜନ୍ମ ନେଲା । ଏଥିରେ ମଧ୍ୟ ମୂଳ ଦ୍ରବ୍ୟ ଭାବରେ ଅନେକ ବନୌଷଧି ସ୍ଥାନ ପାଇଲା ।

ଆୟୁର୍ବେଦ, ୟୁନାନୀ ଆଦି ପାରମ୍ପରିକ ବିଜ୍ଞାନ କେବଳ ଗୋଟିଏ ଗୋଟିଏ ଚିକିତ୍ସା ପଦ୍ଧତି ନଥିଲେ । ପରିବେଶ ସହିତ ଖାପ ଖୁଆଇ ସୁସ୍ଥ ଓ ମାର୍ଜିତ ଜୀବନ ଧାରଣ ପାଇଁ ଏହା ଗୋଟିଏ ସାମଗ୍ରିକ ଧାରା ଥିଲା । ଗୋଟିଏ ଉନ୍ନତ ସାମାଜିକ ପ୍ରାଣୀ ଭାବରେ ଚଳିବା ପାଇଁ ଦେହ ଓ ମନକୁ

ଉପଯୋଗୀ କରିବା ପାଇଁ ଏହା ବାଟ ବତାଉଥିଲା। ରୋଗର ଚିକିତ୍ସା ଅପେକ୍ଷା ନୀରୋଗ ରହିବାର ନୀତି ଉପରେ ଏହାର ଜୋର ଅଧିକ ଥିଲା। ଏହା ହିଁ ସବୁ ପୁରୁଣା ଶରୀରବିଜ୍ଞାନ ଧାରାର ମୂଳମନ୍ତ୍ର ହେଉଥିଲା। ତଥାପି ରୋଗ ହେଲେ ତା'ର ପ୍ରତିକାର ପାଇଁ ଏହିସବୁ ଚିକିତ୍ସା ପ୍ରଣାଳୀରେ ବିଭିନ୍ନ ବାଟ ରହିଥିଲା। ଏହି ଧାରାଗୁଡ଼ିକ ଭିତରୁ ମାତ୍ର ଗୋଟିଏ ଥିଲା ବିଶେଷ ଗୁଣଯୁକ୍ତ 'ଦ୍ରବ୍ୟ' ବା 'ଔଷଧ'ର ବ୍ୟବହାର। ଶରୀର ବିଜ୍ଞାନର ଆରମ୍ଭରେ ସବୁ ଔଷଧ ବା ଦ୍ରବ୍ୟ ଆସୁଥିଲା ଗଛଲତାରୁ। କିନ୍ତୁ ପର ଅବସ୍ଥାରେ ବିଭିନ୍ନ ଦ୍ରବ୍ୟ ଭିତରେ ଏହା ଗୋଟିଏ (ଯଦିଓ ମୁଖ୍ୟ) ହୋଇ ରହିଲା।

ଏହି ଦୃଷ୍ଟିରୁ ବନୌଷଧିର ଚର୍ଚ୍ଚା କୌଣସି ନିର୍ଦ୍ଦିଷ୍ଟ ଚିକିତ୍ସା ପ୍ରଣାଳୀ ସହିତ ବନ୍ଧା ନଥିଲା। ଆହୁରି ମଧ୍ୟ ସାଧାରଣ କ୍ଷତ ବା ରୋଗ ପାଇଁ ଗଛଲତା ଔଷଧର ବ୍ୟବହାର ଗୋଟିଏ ସାମାଜିକ-ସାଂସ୍କୃତିକ ପ୍ରଥା ବା ଲୋକପ୍ରଥା ହୋଇ ଆସିଛି। ତାତ୍ତ୍ୱିକ ବା ପାଠବହିର ଜ୍ଞାନ ନହୋଇ ଏହା ଏକ ବ୍ୟବହାରିକ ଜ୍ଞାନ ଭାବରେ ବଞ୍ଚିରହିଛି। ଗାଈଆଳ ବା କାଠୁରିଆର ଜଙ୍ଗଲୀ ଚେରମୂଳୀ ବା ଆଈମା'ର ଟୁଣୁକା ଔଷଧ ରୂପରେ ଏହା ଆମର ନିତିଦିନିଆ କାମରେ ଆସୁଛି। ଜାଣିଥିବା ବୁଝିଥିବା ବୈଦ୍ୟ ଚିକିତ୍ସକଙ୍କ ହାତରେ ଏହାର ବଡ ଗୁଣ ସବୁ ବାହାରି ପାରୁଛି।

### *କେତେ ଗଛରେ ଔଷଧ ଗୁଣ?*

ଔଷଧ ଗଛ ଚିହ୍ନିବାରେ ଓ କାମରେ ଲଗାଇବାରେ ଭାରତ ଖୁବ୍ ଆଗୁଆ ଥିବା କଥା ବେଶ୍ ଜଣାଶୁଣା। କିନ୍ତୁ ଏହି ବିଷୟରେ ଭାରତୀୟ ଚିନ୍ତାର ଗଭୀରତାର 'ସୂଚନା ମିଳେ ଗୋଟିଏ

କିମ୍ବଦନ୍ତୀରୁ। ମହାବୈଦ୍ୟ ଜୀବକ ତାଙ୍କର ଶିକ୍ଷା ସାରିଲା ବେଳକୁ ଗୁରୁ ତାଙ୍କୁ ଗୋଟିଏ ପରୀକ୍ଷା ଦେଲେ। ପାଖର ଜଙ୍ଗଲରୁ ଔଷଧ ଗୁଣ ନଥିବା କିଛି ଗଛ ବାଛି ଆଣିବା ପାଇଁ ତାଙ୍କୁ କୁହାଗଲା। ଜୀବକ ଜଙ୍ଗଲ ସାରା ବୁଲିଲେ, ସେ ଜଙ୍ଗଲ ଡେଇଁ ରାଜ୍ୟ ସାରା ଖୋଜିଲେ, ରାଜ୍ୟରୁ ରାଜ୍ୟ ବୁଲି ସାରା ଭାରତବର୍ଷର ଗଛ ସବୁ ପରୀକ୍ଷା କଲେ। ହେଲେ ଖାଲି ହାତରେ ଫେରି ଆସି ଗୁରୁଙ୍କୁ କହିଲେ ଯେ ବିନା ଔଷଧ ଗୁଣର ଗୋଟିଏ ହେଲେ ବି ଗଛ ସେ ପାଇଲେ ନାହିଁ। ସତରେ ଏହା ହେଉଛି ପ୍ରକୃତିର ମହାନତା ଦିଗରେ ଭାରତୀୟ ଚିନ୍ତାର ନମୁନା। ଆମ ସଂସ୍କୃତିରେ ପ୍ରକୃତିର ସବୁ କିଛି ମୂଲ୍ୟବାନ।

ତେବେ ସାଧାରଣ ବ୍ୟବହାର ପାଇଁ ବେଦରେ ପ୍ରାୟ ୧୦୦ଟି ଔଷଧ ଗଛର ବର୍ଣ୍ଣନା ରହିଥିବା କଥା ଜଣାଯାଏ। ଚରକ-ସୁଶ୍ରୁତଙ୍କ କାମ ବଳରେ ଏହି ସଂଖ୍ୟା ପ୍ରାୟ ୭୦୦ରେ ପହଞ୍ଚି ଥିଲା। ଏଥିରେ କିଛି ବିଦେଶୀ ଉଦ୍ଭିଦ ମଧ୍ୟ ମିଶିଥିଲା। ୧୧୦୦ ଖ୍ରୀଷ୍ଟାବ୍ଦ ବେଳକୁ ଆୟୁର୍ବେଦର ସବୁଠାରୁ ଉନ୍ନତ ଅବସ୍ଥାରେ ପ୍ରାୟ ୧୫୦୦ ଗଛଲତାର ଔଷଧ କାମରେ ଲାଗୁଥିଲା। ଔଷଧୀୟ ଗୁଣ ଅନୁସାରେ ଏଗୁଡିକୁ ବିଭିନ୍ନ ଶ୍ରେଣୀରେ ସଜାଇ ରଖାଯାଇଥିଲା। ଏପରିକି ସେ ସବୁରେ ଥିବା ରାସାୟନିକ ପଦାର୍ଥ ବିଷୟରେ କିଛି ଧାରଣା ମଧ୍ୟ ପ୍ରାଚୀନ ଭାରତରେ ରହିଥିବାର ସୂଚନା ମିଳେ।

## ଇସ୍‌ଲାମ୍, ୟୁନାନୀ ଓ ସଂସ୍କୃତିର ନୂଆ ମୋଡ

ଖ୍ରୀଷ୍ଟପୂର୍ବ ୮୦୦ରୁ ଖ୍ରୀଷ୍ଟାବ୍ଦ ପ୍ରାୟ ୧୦୦୦ ପର୍ଯ୍ୟନ୍ତ ସମୟ କାଳକୁ ଭାରତୀୟ ଶରୀର ବିଜ୍ଞାନର ସୁବର୍ଣ୍ଣ ଯୁଗ କୁହାଯାଇ ପାରେ। ଏହି ସମୟରେ ଆୟୁର୍ବେଦ ଖୁବ୍ ଉନ୍ନତ ହୋଇ ପାରିଥିଲା। ବୌଦ୍ଧ ଧର୍ମକୁ ଆଦରିଥିବା ରାଜାମହାରାଜାମାନେ ପ୍ରକୃତିପ୍ରେମୀ ଥିଲେ ଓ ବନୌଷଧି ଆଧାରିତ ଆୟୁର୍ବେଦର ପ୍ରସାର ପାଇଁ ପ୍ରଚୁର ସାହାଯ୍ୟ କରୁଥିଲେ। ଏହାପରେ ମଧ୍ୟ ହିନ୍ଦୁ ରାଜବଂଶମାନଙ୍କର ପ୍ରୋତ୍ସାହନରେ ଆୟୁର୍ବେଦ ନିଜର ସ୍ଥିତି ବଜାୟ ରଖିପାରିଥିଲା।

ପଞ୍ଚଦଶ ଶତାବ୍ଦୀ ବେଳକୁ ଭାରତର ଅନେକ ଅଞ୍ଚଳ ଇସ୍‌ଲାମୀୟ ଶାସକମାନଙ୍କ ଅଧୀନକୁ ଚାଲିଗଲା। ସେଥି ସହିତ ଏଠାରେ ଆରବୀୟ ୟୁନାନୀ ଚିକିତ୍ସା ଧାରାର ପ୍ରସାର ଆରମ୍ଭ ହେଲା ଓ ଆୟୁର୍ବେଦ ପାଇଁ ବିଶେଷ ସାହାଯ୍ୟ ମିଳିଲା ନାହିଁ। ୟୁନାନୀରେ ମଧ୍ୟ ବନୌଷଧି ଉପରେ ଯଥେଷ୍ଟ ଗୁରୁତ୍ୱ ରହିଥିଲା। ତେଣୁ ଆୟୁର୍ବେଦର ବିକାଶ ବାଧା ପାଇଲେ ମଧ୍ୟ ଔଷଧ ପାଇଁ ଗଛଲତାର ବ୍ୟବହାର ଚାଲୁ ରହିଲା।

## ଇଂରେଜ ଶାସନ ଓ ପାଶ୍ଚାତ୍ୟ ଧାରା

ସପ୍ତଦଶ ଶତାବ୍ଦୀ ବେଳକୁ ଭାରତରେ ଇଂରେଜ ଶାସନ ଆସିଲା। ଧୀରେ ଧୀରେ ଏହା ସାରା ଭାରତକୁ ଅଧିକାର କଲା। ଇସ୍‌ଲାମୀୟ ଶାସକମାନେ ଭାରତକୁ ନିଜର ଘର କରିନେଇଥିଲେ ଓ ଏଠାରେ ନିଜର ସଂସ୍କୃତିର ବିକାଶ ପାଇଁ ଚେଷ୍ଟା କଲେ। ଅନେକ କ୍ଷେତ୍ରରେ ଏହା ଭାରତୀୟ

ବ୍ୟବସ୍ଥା ସହିତ ମିଶି କିଛି ନୂଆ ବାଟରେ ଆଗେଇଲା । କିନ୍ତୁ ଇଂରେଜମାନେ ଭାରତକୁ ନିଜର ଉପନିବେଶ କଲେ । ଭାରତର କଞ୍ଚାମାଲ ନେଲେ ଏବଂ ଇଂଲଣ୍ଡ ତିଆରି ଜିନିଷ ବିକିବା ପାଇଁ ଏଠାରେ ବଜାର ସୃଷ୍ଟି କଲେ । କେବଳ ଯେ ଏହି ଶାସକମାନେ ବିଦେଶୀ ଥିଲେ ତାହା ନୁହେଁ, ଶାସନ କଳର ଚାବି ମଧ୍ୟ ରହିଲା ବିଦେଶରେ ।

ଏହି ସମୟରେ ଭାରତର ପାରମ୍ପରିକ ଜ୍ଞାନ ପେଶା ଓ ସଂସ୍କୃତି ଆଦି ପାଇଁ କିଛି ବି ଶାସକୀୟ ସହାୟତା ରହିଲା ନାହିଁ । ବରଂ ଏ ସବୁ ପ୍ରତି ଏକ ହୀନମନ୍ୟତା ସୃଷ୍ଟି କରାଗଲା । ଭାରତୀୟ ଶିକ୍ଷା, ସଂସ୍କୃତି ଓ ଚଳଣୀ ଆଦିକୁ ପଛୁଆ, ପୁରୁଣାକାଳିଆ (ଏପରିକି ଅସଭ୍ୟ) ଆଖ୍ୟା ଦିଆଗଲା । ଧନୀ ଓ ପ୍ରଭାବଶାଳୀ ଭାରତୀୟମାନେ ବିଦେଶୀ ଢାଞ୍ଚାକୁ ଆଦରିବାରେ ଲାଗିଲେ । ଆଧୁନିକତାର ନାଁରେ କ୍ରମେ ଏହି ନୂଆ ଢାଞ୍ଚା ମାଡି ଚାଲିଲା ଯାହା ପ୍ରକୃତରେ ଥିଲା ବିଦେଶୀ ଧାରାର ଏକ ବିକୃତ ନକଲ ।

ଭାରତୀୟ ଚିକିତ୍ସା ବ୍ୟବସ୍ଥା ମଧ୍ୟ ଏହି ବ୍ୟାପକ ହୀନମନ୍ୟତାର ଶିକାର ହେଲା । ଆୟୁର୍ବେଦର ଆଦର ପ୍ରାୟ ହଜିଗଲା ଓ ଏହା ଜାଗାରେ ଆସିଲା ୟୁରୋପୀୟ ଚିକିତ୍ସା ଧାରା (ଯାହା ଏବେ ସାଧାରଣ ଭାବରେ *ଏଲୋପାଥି* ନାମରେ ଜଣା) । ଏହାକୁ ଆଧୁନିକ ଭେଷଜବିଜ୍ଞାନ ଉପାଧି ମିଳିଲା । ବନୌଷଧି ବଦଳରେ ଏହାର ଗୁରୁତ୍ୱ ରହିଲା ରାସାୟନିକ ଔଷଧ ଉପରେ । ଅବଶ୍ୟ ପ୍ରଥମ ଅବସ୍ଥାରେ ଏହାର ଅନେକ ଔଷଧ ତିଆରି ହେଉଥିଲା ଗଛଲତାର ଦେହରୁ । ତଥାପି ଏଥିରେ ଆଖପାଖର ପରିବେଶ, ରୋଗୀର ସାମାଜିକ ଅବସ୍ଥା ବା ସ୍ଥାନୀୟ ବୈଦ୍ୟର କିଛି ଭୂମିକା ରହିଲା ନାହିଁ । ନୈର୍ବ୍ୟକ୍ତିକତା (ଅବ୍‌ଜେକ୍ଟିଭିଟି) ନାମରେ ଏହା ଯାନ୍ତ୍ରିକତା ଆଣିଦେଲା କହିଲେ ଭୁଲ ହେବନାହିଁ ।

## ନୂଆ ବିଜ୍ଞାନର ନୂଆ ଚିନ୍ତା

ସପ୍ତଦଶ ଶତାବ୍ଦୀରେ ୟୁରୋପରେ ବିଜ୍ଞାନ ଚିନ୍ତାରେ ବିରାଟ ବିପ୍ଳବ ଆସିଲା। ଏହାର ଫଳ ରୂପେ ଆସିଲା ଆଧୁନିକ ବିଶ୍ଳେଷଣାତ୍ମକ ବିଜ୍ଞାନ। ବିଶ୍ୱକୁ ଓ ପ୍ରକୃତିର ଅନେକ ରହସ୍ୟକୁ ବୁଝିବା ପାଇଁ ଏହା ଏକ ନୂଆ ତତ୍ତ୍ୱ ଯୋଗାଇଲା। ଆଧୁନିକତାର ସେ ଉତ୍ସାହ ବିଜ୍ଞାନ ପାଇଁ ଗୋଟିଏ ନୂଆ ଦର୍ଶନ ମଧ୍ୟ ଆଣିଦେଲା। ଏହା ଥିଲା *ଲଘୁକରଣ* ବା *ରିଡକ୍ସନିଜମ୍*। ଏହାର ସାରକଥା ହେଲା ଯେ ସବୁ ଜଟିଳ ଜିନିଷ କିଛି ସରଳ ଜିନିଷର ସମଷ୍ଟି ମାତ୍ର। ଛୋଟିଆ ଅଂଶଗୁଡିକୁ ବୁଝି ମିଶାଇଦେଲେ ଜଟିଳ ଜିନିଷଟିର ରହସ୍ୟ ବୁଝି ହୋଇଯିବ ବୋଲି ଏଥିରୁ ବିଶ୍ୱାସ ଆସିଲା। କିନ୍ତୁ ଏହାର ବିପଦ ଆସିଲା ଯେବେ ଜୀବଜନ୍ତୁଙ୍କୁ ଓ ଜୀବନର ଧାରାକୁ ମଧ୍ୟ ଏହି ବାଟରେ ଦେଖାଗଲା। ଲଘୁକରଣର ଧାରାରେ ପ୍ରାଣୀ ହେଲା କେତୋଟି ଅଙ୍ଗପ୍ରତ୍ୟଙ୍ଗର ସମାହାର, ରୋଗ ହେଲା ଏକ ନିର୍ଦ୍ଦିଷ୍ଟ ଅଙ୍ଗର ଅସୁବିଧା ଏବଂ ଔଷଧ ହେଲା ଗଛଲତାର କିଛି ବିଶେଷ ରାସାୟନିକ। ଏହି ଚିନ୍ତାର ପ୍ରଧାନ ଶିକାର ହେଲା ବନୌଷଧି ଓ ଆୟୁର୍ବେଦ, ୟୁନାନୀ ଭଳି ପାରମ୍ପରିକ ଚିନ୍ତାର ସାମଗ୍ରିକତା।

ଭେଷଜ ବିଜ୍ଞାନର ଏହି ନୂଆ ମୋଡକୁ କେହି କେହି ମଣିଷ ସଭ୍ୟତାର ବିକାଶ ଧାରା ସହିତ ତୁଳନା କରନ୍ତି। ଅତି ପୁରୁଣା କାଳରେ ମଣିଷ ପଥର ଖଣ୍ଡଗୁଡିକୁ ହତିଆର ଭାବରେ କାମରେ ଲଗାଉଥିଲା। ଏହି 'ପ୍ରାଚୀନ ପ୍ରସ୍ତର ଯୁଗ' ପରେ ଆସିଲା 'ନୂତନ ପ୍ରସ୍ତର ଯୁଗ' ଯେବେ ମଣିଷ ତା'ର ପଥର ହତିଆରକୁ ଘଷି ମାଜି ଚିକଣ ଓ ସୂକ୍ଷ୍ମ କଲା। ଏହାପରେ ଆସିଲା କଂସା ହତିଆରର ସମୟ ବା କାଂସ୍ୟ ଯୁଗ। ଶେଷରେ ମଣିଷ ଲୁହାର ଉପକରଣ ଗଢ଼ି କୃଷି, ଶିକାର ଓ

ଯୁଦ୍ଧ କାମରେ ଲଗାଇଲା। ଏହି ଲୌହ ଯୁଗକୁ ବିକାଶଶୀଳ ମଣିଷ ସଭ୍ୟତାର ସବୁଠାରୁ ଉନ୍ନତ ଅବସ୍ଥା ମନେ କରାଯାଏ।

ସେହିଭଳି ଭେଷଜବିଜ୍ଞାନ ପାଇଁ ମତ ଆସିଲା ଯେ ବନୌଷଧିର ଯୁଗ ଥିଲା ସବୁଠାରୁ ପୁରୁଣା ଓ ପଛୁଆ। ଏହା ପରର ବିଭିନ୍ନ ଅର୍କ ଓ ଦ୍ରବଣ ଆଦିର ଆୟୁର୍ବେଦ ଯୁଗ କିଛି ଆଗୁଆ ଥିଲା। ତୃତୀୟ ଅବସ୍ଥାରେ ଗଛଲତାର ବିଶୁଦ୍ଧ ରାସାୟନିକ ଉପାଦାନ କାମରେ ଲାଗିଲା। ଶେଷରେ ଆସିଲା ସବୁଠାରୁ 'ଉନ୍ନତ' ଆଧୁନିକ ଯୁଗ ଯେବେ ଔଷଧଗୁଡିକ ରସାୟନ ବିଜ୍ଞାନର ଧାରାରେ କୃତ୍ରିମ ଉପାୟରେ ତିଆରି କରାଗଲା। ଉନବିଂଶ ଶତାବ୍ଦୀର ଶେଷ ଭାଗରେ ୟୁରୋପରୁ ଆସିଥିବା ଏହି ମତଟି ଉପରେ ଅନେକ ବିବାଦ ରହିଛି। କିନ୍ତୁ ଦୁଃଖର କଥା ଯେ ପାଶ୍ଚାତ୍ୟ ସମାଜ ଅପେକ୍ଷା ଆୟୁର୍ବେଦର ଜନ୍ମସ୍ଥାନ ଭାରତରେ ଏହା ଅଧିକ ପ୍ରଭାବ ପକାଉଛି।

## *ବନୌଷଧି ପାଇଁ ନୂଆ ଆଦର*

ଆୟୁର୍ବେଦର ଏତେ ସଂଖ୍ୟାର ଔଷଧ ଗଛ ଯେ ସତରେ କାମ ଦେଉଥିବ ତାହା ୟୁରୋପୀୟମାନେ ପ୍ରଥମେ ବିଶ୍ୱାସ କଲେନାହିଁ। ତଥାପି ସେମାନେ ଏସବୁର ତାଲିକା କରିବାରେ ଲାଗି ପଡିଲେ। ଗୋଆରେ ରହୁଥିବା ଜଣେ ପର୍ତ୍ତୁଗୀଜ ଡାକ୍ତର ୧୫୬୩ ମସିହାରେ ଆୟୁର୍ବେଦ ଉପରେ ଗୋଟିଏ ସଂକଳନ ପ୍ରକାଶ କଲେ। ୧୮୧୦ ରୁ ୧୯୦୪ ଭିତରେ ଏ ଦିଗରେ ବ୍ୟାପକ କାମ ହୋଇଥିଲା ଓ ଅନେକଗୁଡିଏ ସଂକଳନ ବାହାରି ଥିଲା। ଇଂରେଜ ସେନାବାହିନୀର ଡାକ୍ତର ଓ

ଅଧିକାରୀମାନେ ଏହି କାମରେ ବିଶେଷ ଭୂମିକା ନେଇଥିଲେ। ଏଭଳି ଅନେକ ଔଷଧ ଗ୍ରନ୍ଥ ବାହାରିଲେ ମଧ୍ୟ ଆୟୁର୍ବେଦର ବ୍ୟବହାର ବିଶେଷ ଆଗେଇ ପାରିଲା ନାହିଁ। କାରଣ ସାମାଜିକ ପରିବେଶ ଅନେକ ବଦଳି ଯାଇଥିଲା।

ପ୍ରାୟ ୪୦୦ ବର୍ଷର ବାଧା ଓ ହତାଦର ଭିତରେ ପାରମ୍ପରିକ ବୈଦ୍ୟକୁଳ ପ୍ରାୟ ଉଭେଇ ଯାଇଥିଲା। *ଏଲୋପାଥି* ଓ 'ବୋତଲ ଔଷଧ' ବେଶି ଆଗୁଆ ଓ କାମିକା ବୋଲି ବିଶ୍ୱାସ ଆସିଯାଇଥିଲା। ଅଭିଜ୍ଞତାର ଅଭାବରୁ କେତେ ଔଷଧ ଗଛର ଚିହ୍ନଟ ନେଇ କିଛି ସନ୍ଦେହ ରହୁଥିଲା। ସେ ସବୁର ଉପଯୋଗୀ ଅଂଶ ଠିକ୍ ଭାବରେ ସଂଗ୍ରହ କରିବା ଏବଂ ଔଷଧର ଗୁଣ ଓ ମାନ ପରୀକ୍ଷା କରିବା ଦିଗରେ ଦକ୍ଷତା ମଧ୍ୟ କମି ଯାଉଥିଲା। ଆୟୁର୍ବେଦର ଆରମ୍ଭ ସମୟରୁ କେତେ ହଜାର ବର୍ଷ ଭିତରେ ପରିବେଶ ବଦଳିବା ସହିତ କେତେ ଉଦ୍ଭିଦର ଔଷଧ ଗୁଣ ବଦଳି ଯାଇଥିବ। ଆଉ କେତେ ଗଛ ମଧ୍ୟ ଲୋପ ପାଇଯାଇଥିବା ସମ୍ଭବ।

ପୂର୍ଣ୍ଣାଙ୍ଗ ଭାବରେ ଆୟୁର୍ବେଦ ସିନା ବଞ୍ଚିଲାନାହିଁ, ହେଲେ ମଣିଷ ପାଇଁ ବନୌଷଧିର ଆକର୍ଷଣ ପୂରା ମରିଗଲା ନାହିଁ। କିଛି ନିର୍ଦ୍ଦିଷ୍ଟ ରୋଗ ପାଇଁ ବନୌଷଧିର ବ୍ୟବହାର ଉପରେ ପରୀକ୍ଷା ନିରୀକ୍ଷା ଚାଲୁ ରହିଲା। ଅନେକ କ୍ଷେତ୍ରରେ ବନୌଷଧିର ଗୁଣ ସତ ବୋଲି ଏଥିରୁ ଜଣା ପଡିଲା। ଆଉ କେତେ ଗଛରୁ ବିଶୁଦ୍ଧ ରାସାୟନିକ ଔଷଧ ମଧ୍ୟ ବାହାରି ପାରିଲା। ଆଗରୁ ସିଙ୍କୋନା ଗଛରୁ କୁଇନାଇନ୍ ବାହାରିଥିଲା। ଏବେ ଭାରତରେ ବ୍ୟବହୃତ ସର୍ପଗନ୍ଧା ଓ ସଦାବିହାରୀ ଭଳି ଗଛରୁ *ରିସରପିନ୍, ଭିନ୍‌କ୍ରିଷ୍ଟିନ୍, ଭିନ୍‌ବ୍ଲାଷ୍ଟିନ୍* ଭଳି ଔଷଧ ଅଲଗା କରାଯାଇପାରିଲା। ଏହା ଫଳରେ

ଔଷଧ ଗଛ ଓ ସେଥି ସହିତ ଯୋଡା ଲୋକକଥାର ଆଦର ବଢିଲା। ଏହା ଲୋକ ଉଦ୍ଭିଦବିଜ୍ଞାନ ବା *ଏଥ୍‌ନୋ ବଟାନୀ* ନାମରେ ବିଜ୍ଞାନର ଗୋଟିଏ ନୂଆ ବିଭାଗ ହୋଇଗଲା। ଏହାର ତଥ୍ୟ ପୃଥିବୀର ବିଭିନ୍ନ ଅଞ୍ଚଳରୁ ନୂଆ ଔଷଧ ଖୋଜିବାରେ ସାହାଯ୍ୟ କଲା।

## *ଔଷଧ କିନ୍ତୁ ବେପାର ହେଲା*

ବନୌଷଧିରୁ ରାସାୟନିକ ବାହାର କରିବାରେ ଯେଉଁ ବିଜ୍ଞାନୀମାନେ ବଡ ଭୂମିକା ନେଲେ ସେମାନଙ୍କର ଆଭିମୁଖ୍ୟ ଭାରତୀୟ ଚିନ୍ତାଠାରୁ ବେଶ୍ ଅଲଗା ଥିଲା। ପୂରା ଗଛ, ପତ୍ର ବା ଫଳ ଆଦି ପ୍ରାକୃତିକ ବନୌଷଧି ତାଙ୍କ ପାଇଁ ଥିଲା ଅମାର୍ଜିତ ବା କଞ୍ଚା (କ୍ରୁଡ୍)। ଏଥିରୁ ବିଶୁଦ୍ଧ ରାସାୟନିକ ରୂପରେ 'ଆଧୁନିକ' ଔଷଧ ବାହାର କରିବା ଥିଲା କେବଳ ତାଙ୍କର ଲକ୍ଷ୍ୟ। ଏହି ରାସାୟନିକ ଛଡା ଔଷଧରେ ରହିଥିବା ଗଛପତ୍ରର ଅନ୍ୟ ଅଂଶ ସବୁ ଥିଲା ତାଙ୍କ ପାଇଁ ଅଳିଆ। ଯେଉଁ ମୂଳ ଦ୍ରବ୍ୟରେ ଏସବୁର କିଛି ପରିପୂରକ ବା ସଂକର୍ମୀ (*ସିନର୍‌ଜିକ୍*) ଗୁଣ ଥିଲା କିମ୍ବା ଯେଉଁଠି ଏକରୁ ଅଧିକ ରାସାୟନିକ ମିଶି ଔଷଧଗୁଣ ଆଣୁଥିଲା ସେଠାରେ ଏହି ବିଜ୍ଞାନୀମାନେ ବିଶୁଦ୍ଧ ଔଷଧ ପାଇବାରେ ବିଫଳ ହେଲେ। କିନ୍ତୁ କୁହାଗଲା ଯେ ସେ ବନୌଷଧି କାମ କରୁନାହିଁ।

ଯେଉଁଠାରେ ବନୌଷଧିର ଏକକ ରାସାୟନିକ ରୂପ ଚିହ୍ନଟ ହୋଇପାରିଲା, ସେଠାରେ ଔଷଧ ଶିଳ୍ପପତିମାନେ ମାଲିକାନା (ସ୍ୱତ୍ୱଅଧିକାର) ଦାବି କଲେ। ଆମ ବଣଜଙ୍ଗଲରୁ ଔଷଧ ଗଛ ନେଇ, ରାସାୟନିଜ ଔଷଧ ବଟିକା ତିଆରି କରି ଆମକୁ ଚଢା ଦାମରେ ବିକ୍ରି କଲେ। ଏହି

ଧାରାରେ ଆଜି ନିମ୍ବ ଓ ଅନ୍ୟ କେତେ ଗଛର ଜିନିଷ ଉପରେ କିଛି ମଣିଷ ବ୍ୟକ୍ତିଗତ ସମ୍ପତ୍ତିର ଦାବି ଉଠାଉଛନ୍ତି। ଖାଲି ବିଦେଶୀ 'ବୌଦ୍ଧିକ ସମ୍ପଦ ଅଧିକାର' ଯେ ଭୁଲ ତାହା ନୁହେଁ। ଭାରତୀୟ ବା ଅନ୍ୟ ଦେଶୀୟ ଦାବି ମଧ୍ୟ ଅନୈତିକ। ଏହାଛଡା, ପ୍ରାକୃତିକ ବନୌଷଧି ପାଇଁ ଅଳ୍ପ ପରିମାଣର ଗଛଲତା ଦରକାର ପଡୁଥିଲା। କିନ୍ତୁ ରାସାୟନିକ ଔଷଧ ପାଇଁ ବେଶ୍ ପରିମାଣର କଞ୍ଚାମାଲ ଦରକାର ହେଲା। ଫଳରେ ଜଙ୍ଗଲରୁ ସର୍ପଗନ୍ଧ ଭଳି ଅନେକ ମୂଲ୍ୟବାନ ଉଦ୍ଭିଦ ଉଭେଇ ଯିବାକୁ ବସିଲାଣି।

## *ସମାଜ ସହିତ ସ୍ୱାସ୍ଥ୍ୟ ବ୍ୟବସ୍ଥା ବି ବଦଳିଲା*

ସମୟ କ୍ରମେ ମଣିଷର ସମାଜ ବଦଳି ଚାଲିଲା। ମଣିଷ ଜଙ୍ଗଲରୁ ବାହାରିଲା ଓ ଜଙ୍ଗଲ ଧାରରେ ଗାଁ ବସାଇ ରହିଲା। ପୂରା ଗାଁଟି ତଥାପି ଗୋଟିଏ ବଡ ପରିବାର ଭଳି ଚଳିଲା। ଗାଁର ବୈଦ୍ୟ ବା କବିରାଜ ମଣିଷଙ୍କୁ ଜାଣୁଥିଲେ, ପାଖର ଗଛଲତାଙ୍କୁ ବୁଝୁଥିଲେ। ବେଳ ଅବେଳରେ ରୋଗ-ମଣିଷ-ଗଛ ଭିତରେ ମେଳ ରଖି ଚିକିତ୍ସା କରୁଥିଲେ। ସମୟ ଆସିଲା ଯେବେ ମଣିଷ ଦେହ ଓ ମନରେ ପ୍ରକୃତିଠାରୁ ବେଶ୍ ଦୂରେଇଗଲା ଓ ସହର ଗଢିଲା। ସେଠାରେ ଚିହ୍ନାଠାରୁ ଅଚିହ୍ନା ବଳେଇଲା।

ସେଠାକୁ ଔଷଧ ଆସିଲା କେଉଁ ଦୂର କାରଖାନାରୁ। ଆଉ ସେ ଔଷଧ ଦେବା ପାଇଁ ରହିଲେ 'ଶିକ୍ଷା କାରଖାନା'ରେ ତିଆରି ଡାକ୍ତର। ଏହି ନୂଆ କବିରାଜମାନେ ଆଧୁନିକ ବିଦ୍ୟାବୁଦ୍ଧିରେ

ବିଚକ୍ଷଣ ହେଲେ । କିନ୍ତୁ ଔଷଧ ଓ ସ୍ୱାସ୍ଥ୍ୟସେବାର ପ୍ରକୃତିଗତ ଓ ସାମାଜିକ ଦିଗ ସହିତ ତାଙ୍କର କିଛି ସମ୍ପର୍କ ରହିଲାନାହିଁ କହିଲେ ଚଳେ । କେବଳ *ଏଲୋପାଥି*ର ନୁହେଁ, ଆୟୁର୍ବେଦ, ୟୁନାନୀ ଆଦି ପାରମ୍ପରିକ ଧାରାର ଆଧୁନିକ ରୂପରେ ଏହି ଅବସ୍ଥା ଆସିଗଲା । ଔଷଧ ଓ ଚିକିତ୍ସକ ବେଶ୍ ଖର୍ଚ୍ଚବହୁଳ ହୋଇଗଲେ । ତାହା ମଧ୍ୟ ସବୁ ଅଞ୍ଚଳରେ ଓ ସବୁ ମଣିଷଙ୍କ ପାଇଁ ସୁଲଭ ହେଲା ନାହିଁ ।

## *ଏବେ ବି ଆଶା ରହିଛି*

ତଥାପି ପରିବାରରେ ବା ଛୋଟ ବସତିରେ ପୁରୁଖା ମଣିଷଙ୍କ ମୁହଁରେ ଅନେକ ଜରୁରୀ ଚିକିତ୍ସାର ଧାରା ବଞ୍ଚି ରହିଲା । ହାତ ପାହାନ୍ତା ଜିନିଷ, ବିଶେଷ କରି ଗଛଲତା ସବୁ ଏହାର ଔଷଧ ହେଲେ । ଅତି ଦୁର୍ଗମ ଅଞ୍ଚଳରେ ମଧ୍ୟ ଏହା କାମ ଦେଲା । ଏଭଳି ଘରୋଇ ବ୍ୟବହାର ହିଁ ବନୌଷଧିକୁ ଏକ ଭିନ୍ନ ରୂପରେ ବଞ୍ଚାଇ ରଖିଛି । ପ୍ରକୃତି କୋଳକୁ ଫେରିଯିବା ପାଇଁ ବ୍ୟାକୁଳ ମଣିଷଙ୍କୁ ସ୍ୱାସ୍ଥ୍ୟ କ୍ଷେତ୍ରରେ ଏହା ଏକ ବିକଳ୍ପ ଦେଖାଉଛି । ଏପରି କିଛି ବ୍ୟାପକ ବ୍ୟବହାର ବା ବିଶେଷ ଗୁଣକୁ ମନରେ ରଖି ଏହି ବହିରେ ଆଲୋଚିତ ଉଦ୍ଭିଦଗୁଡ଼ିକୁ ବଛା ଯାଇଛି ।

*ପୁଣି ଥରେ ସୂଚାଇ ଦେଉଛୁ ଯେ ପରିବେଶ ସହିତ ଆମ ଜୀବନର ଓ ବିଜ୍ଞାନର ନିବିଡ଼ ସମ୍ପର୍କ ବିଷୟରେ ସଚେତନତା ଆଣିବା ହେଉଛି ଏହି ବହିର ମୂଳ ଲକ୍ଷ୍ୟ । ଗଛଲତାଙ୍କ ଔଷଧ ଗୁଣ ସେଥିପାଇଁ ଗୋଟିଏ ବିଶେଷ ମାଧ୍ୟମ ହୋଇପାରିବ ।*

## କେଉଁ ଗଛରେ ଔଷଧ

ମହାଋଷି ଜୀବକଙ୍କର ଆଖିରେ ସବୁ ଗଛରେ ଔଷଧ ଗୁଣ ରହିଛି। ଆୟୁର୍ବେଦର ଔଷଧ ଭାବରେ ପ୍ରାୟ ୧୫୦୦ ଗଛ ଚିହ୍ନଟ ହୋଇଛି। ପ୍ରାୟ ୧୦୦ ଉଦ୍ଭିଦରୁ ରାସାୟନିକ ଔଷଧ ତିଆରି କରାଯାଇ ପାରିଛି। ଏହି ଭାବରେ ଅଲଗା ଅଲଗା ଦୃଷ୍ଟିରେ ଔଷଧ ଗଛର ସଂଖ୍ୟା ଅଲଗା।

କିନ୍ତୁ ଔଷଧ ଗଛର ପ୍ରକାର ବିଷୟରେ ପ୍ରାୟ ସଭିଏଁ ଏକମତ। ଅତି ଛୋଟିଆ ଉଦ୍ଭିଦରୁ ଆରମ୍ଭ କରି ମହାଦ୍ରୁମ ଯାଏଁ ସବୁ ପ୍ରକାରର ଉଦ୍ଭିଦରେ ଔଷଧ ଗୁଣ ରହିଛି। ଆଗକାଳରେ ଏଭଳି ବ୍ୟାପକତା ବିଶେଷ ଭାବରେ ଜଣାଥିଲା। ଏବେ ବି ଆଧୁନିକ ବିଜ୍ଞାନର ଧାରାରେ ଏହାର ପ୍ରମାଣ ମିଳୁଛି। ଏହି ବ୍ୟାପକତା ଦିଗରେ ସଚେତନତା ଆଣିବା ଏହି ବହିର ପ୍ରଥମ ଲକ୍ଷ୍ୟ।

ଔଷଧ ଗୁଣ ଥିବା ଗଛମାନଙ୍କର ସଂଖ୍ୟା ଓ ବ୍ୟାପକତା ଯେପରି ଆମକୁ ଡରାଇ ନଦିଏ ସେ ଦିଗରେ ଭରସା ଦେବା ହେଉଛି ଏହି ବହିଟିର ଆଉ ଗୋଟିଏ ଲକ୍ଷ୍ୟ। ଏହି ଭରସା ଆସିବ ଗଛମାନଙ୍କ ସହିତ ପରିଚିତି ଓ ସେମାନଙ୍କ ପାଇଁ ଆନ୍ତରିକ ଶ୍ରଦ୍ଧା ମାଧ୍ୟମରେ। ଆମ ଘରିପାଖର ଅରମା ଅନାବନା ଘାସ ବା ବୁଦା ସବୁର ଯେ ବଡ ଔଷଧ ଗୁଣ ରହିଛି ତାହା ଜାଣିଲେ ନିଶ୍ଚୟ ଭୟ କଟିବ। ସବୁ ଔଷଧ ଗଛ ଯେ କୌଣସି ଦୂର ଘଞ୍ଚ ଜଙ୍ଗଲର ବିଶେଷ ଜିନିଷ ନୁହେଁ ତାହା ଜାଣିଲେ ଆମର ଦମ୍ଭ ବଢ଼ିବ।

ନିତି ଦେଖା ଛୋଟ ଗଛରୁ ଚିହ୍ନିବା ଜାଣିବା ଆରମ୍ଭ କଲେ ଆଗ୍ରହ ବଢ଼ିବ ଓ ଆମର ପରିଚିତି ଟାଣୁଆ ମଧ୍ୟ ହେବ। ମୂଳଦୁଆ ଟାଣ ହେଲେ ଆଗକୁ ଯିବା ସହଜ ଓ ଫଳପ୍ରଦ ହେବ।

ଏହି ଲକ୍ଷ୍ୟ ନେଇ ବହିଟିର ଗଛମାନଙ୍କୁ ବଛାଯାଇଛି। ଏଥିରୁ ଔଷଧ ଗଛର ସଂଖ୍ୟା ଓ ପ୍ରକାର ଯେ ଅନେକ ବେଶି ତାହା ବୁଝିବା ପାଇଁ ଖୁବ୍ କମ୍ ସମୟ ଲାଗିବ।

## *ଗଛଟିର ନାଁ କ'ଣ?*

ଏହି ପ୍ରଶ୍ନଟିର ଉତ୍ତର ଅନେକ। ଆମ ଆଈମା' ଗୋଟିଏ ନାଁ କହିଲା ବେଳକୁ ବୈଦ୍ୟ ଆଉ ଗୋଟିଏ ନାଁ କହିବେ। ଦେଶର ଅଲଗା ଅଞ୍ଚଳରେ ନାଁ ମଧ୍ୟ ଅଲଗା। ଗୋଟିଏ ଅଞ୍ଚଳରେ ବି ଏକା ଗଛର କେତେ ନାଁ ଥାଇପାରେ। ବିଭିନ୍ନ ଜାଗାରେ ପହଞ୍ଚୁଥିବା ଗୋଟିଏ ବହି ଲେଖିଲା ବେଳକୁ ଏହା ବଡ ସମସ୍ୟା ହୁଏ। ଏଠାରେ ବି ଆମକୁ ତାହା ଅସୁବିଧାରେ ପକାଇଛି ଓ ଆମର ସାଧ୍ୟମତେ ଆମେ ତାକୁ ସୁଧାରିବାକୁ ଚେଷ୍ଟା କରିଛୁ। ଆମର ଆଖପାଖରେ ଚଳୁଥିବା ନାଁରୁ ଆମେ ମୋଟାମୋଟି ଭାବରେ ଆରମ୍ଭ କରିଛୁ। ବିଭିନ୍ନ ବହିଂ ସହିତ ମେଳ ରଖିବାକୁ ଚେଷ୍ଟା କରିଛୁ। ଭାରତର ଅନ୍ୟ ଅଞ୍ଚଳ ସହିତ ଯୋଡିବା ପାଇଁ ସଂସ୍କୃତ ନାଁ ଖୋଜିଛୁ। କିନ୍ତୁ ସଂସ୍କୃତରେ ପ୍ରତି ଗଛର ଅନେକ ନାଁ ରହୁଛି — ତେଣୁ ସମସ୍ୟାଟା କିଛିଦୂର ବଢିଯାଇଛି।

ଉଦ୍ଭିଦବିଜ୍ଞାନର ନାଁରେ ଉଦ୍ଭିଦର ବଂଶ, ପ୍ରଜାତି ଓ ଜାତି ଚିହ୍ନଟ ହେଉଛି। ଅଳ୍ପ କିଛି ଜାଗାରେ ଏଥିରେ ସନ୍ଦେହ ଥିଲେ ବି ଯୋଗାଯୋଗ ରଖିବା ପାଇଁ ଗୋଟିଏ ସ୍ତରରେ ଏହାକୁ ହିଁ ମାଧ୍ୟମ କରିବାକୁ ହେବ। କିନ୍ତୁ ସାଧାରଣ ଭାବରେ ଏହି ନାମ ଚଳିବା ପ୍ରାୟ ଅସମ୍ଭବ। ଏ ଦିଗରେ ଯଦି ଯଥେଷ୍ଟ ଲୋକ ଚେଷ୍ଟା କରନ୍ତି, ତେବେ ହୁଏତ କିଛି ଗୋଟିଏ ସୁବିଧା ନୂଆ ବାଟ ବାହାରିବ।

## ଗଛକୁ ଚିହ୍ନିବା କିପରି ?

ଆମ ପରମ୍ପରାରେ ଜ୍ଞାନ ଆସିଥାଏ ବ୍ୟକ୍ତିଗତ ସମ୍ପର୍କରୁ। ଗୁରୁକୂଳର ଶିକ୍ଷା, ବାପା ମା'ଙ୍କ ସାଙ୍ଗରେ କାମ କରିବା ବା ଭାଇଭଉଣୀ ସାଙ୍ଗସାଥିଙ୍କ ସହ ଖେଳମଉଜ ଏହିସବୁ ବାଟରେ ଆଗକାଳର ପିଲା ପ୍ରକୃତିକୁ ଜାଣୁଥିଲା, ବୁଝୁଥିଲା। କିଏ କେଉଁ ଗଛ ତାହା ସେ ଅନୁଭୂତିରୁ ଜାଣୁଥିଲା, ସମୟ ଆସିଲେ ତା'ର ପିଲାମାନଙ୍କୁ ଜଣାଉଥିଲା।

ଏବେ କିନ୍ତୁ ସବୁକିଛି ବଦଳି ଯାଉଛି। ଜଙ୍ଗଲ ମଝିରେ ମଧ୍ୟ ଛପାବହି ମାଧ୍ୟମରେ 'ପରିବେଶ ଶିକ୍ଷା ଦେବାର ଆନ୍ତର୍ଜାତିକ ଯୋଜନା ଆସୁଛି। ତେବେ ସାଧାରଣ ଲୋକଙ୍କ ପାଇଁ ସାଥି ଭାବରେ ବହିର ମୂଲ୍ୟ ନିଶ୍ଚୟ ରହିଛି। ସେଥିରେ ଗଛ ଚିହ୍ନଟ ପାଇଁ କିଛି ନିର୍ଦ୍ଦିଷ୍ଟ ଧାରା ଓ ବର୍ଣ୍ଣନା ରହୁଛି। ଏହାକୁ ଆମେ ଉଦ୍ଭିଦବିଜ୍ଞାନରେ ଧାରା ଭାବରେ ଜାଣୁଛେ। ସଂକ୍ଷିପ୍ତ ରୂପରେ ଏହା ପରିଶିଷ୍ଟ ୧ (ପୃ ୮୬)ରେ ଦିଆଯାଇଛି। କିନ୍ତୁ ସାଧାରଣ ଲୋକ ପାଇଁ ଏହା ମଧ୍ୟ ସବୁଦିନିଆ ବ୍ୟବହାରର କଥା ନୁହେଁ। ତେଣୁ ଏହି ବହିଟିରେ ଆମେ ତା'ର ସୀମିତ ବ୍ୟବହାର କରିଛୁ ଓ ଚିତ୍ର ଉପରେ ଜୋର ଦେଇଛୁ। ଏ ଦିଗରେ ମଧ୍ୟ ସହଜ ଓ ସୁବିଧା ଧାରା ଖୋଜିବା ଅତି ଜରୁରୀ।

## ଔଷଧ ଓ ଚିକିତ୍ସା

ଆମ ଘରିପାଖ ଗଛରେ ଯଦି ଏତେ ଔଷଧ ରହିଛି ତେବେ ଏତେ ରୋଗୀ କଷ୍ଟ ପାଉଛନ୍ତି କାହିଁକି ? ଏହାର କାରଣ ଅନେକ। ତେବେ ଗୋଟିଏ ବଡ କାରଣ ହେଉଛି ଏହା ଯେ, ଔଷଧକୁ

ବ୍ୟବହାର କରିବା ପାଇଁ ମଧ୍ୟ କିଛି ବିଶେଷ ଦକ୍ଷତା ଦରକାର। ଏହି ଦକ୍ଷତା ହାସଲ କରିବା ପାଇଁ କିଛି ବିଶେଷ ଅନୁଭୂତି ଓ ତାଲିମ ଦରକାର। କବିରାଜ ବା ଡାକ୍ତରଙ୍କ ପାଖରେ ଏହା ରହିଛି ଏବଂ ଜଟିଳ ରୋଗର ଚିକିତ୍ସା ପାଇଁ ନିଶ୍ଚିତ ଭାବରେ ତାଙ୍କର ସହାୟତା ନେବା ଉଚିତ।

ତଥାପି ଅନେକ ଛୋଟ ଅସୁବିଧା ପାଇଁ ଉଣାଅଧିକେ ସମସ୍ତେ ସାଧାରଣ ବନୌଷଧିକୁ କାମରେ ଲଗାଇପାରିବେ। ଏଥିପାଇଁ ମଧ୍ୟ ପ୍ରୟୋଗ ବିଧି, ପରିମାଣ ଆଦି ବିଷୟରେ ଜାଣିବା ଦରକାର। ଏହି ବହିଟି ସେ ଦିଗରେ ବିଶେଷ ସାହାଯ୍ୟ କରିପାରିବ ନାହିଁ। ଗଛଗୁଡିକର ମୋଟାମୋଟି ଉପାଦେୟତାର ଧାରଣା ପାଇବା ପାଇଁ ଏହି ବହିଟି କାମ ଦେବ। ଏହି ଧାରଣରୁ ଆରମ୍ଭ କରି ଜଣେ ନିଜ ଚାହିଦା ଅନୁସାରେ ଆଗେଇ ପାରିବ।

## *ଜାଣିବାର ଶେଷ ନାହିଁ*

ଔଷଧ ଗୁଣ ଥିବା କିଛି ଗଛ ଦିଗରେ ଆଗ୍ରହ ସୃଷ୍ଟି କରିବା ଏହି ବହିଟିର କାମ। ଆଗ୍ରହ ବଢ଼ିଲେ ଜଣେ ବେଶି ଜାଣିବାକୁ ଚାହିଁବ। ସେଥିରେ ସାହାଯ୍ୟ କରିବା ପାଇଁ ଅନେକ ଛୋଟ ବଡ଼ ବହି ରହିଛି। ଆମେ ମଧ୍ୟ ସେ ବହିମାନଙ୍କରୁ ଶିଖିଛୁ। ଏହି ବହିଟି ଲେଖିବା ପାଇଁ ସେଥିରୁ ସାହାଯ୍ୟ ନେଇଛୁ। ଏଭଳି କିଛି ବହିର ତାଲିକା ଶେଷ (ପୃ ୯୩-୯୪)ରେ ରହିଛି। ଏଥିରୁ କେତେଟିଏ ସହଜରେ ମିଳିପାରିବ ଓ ବୁଝିହେବ। ଏହି ତାଲିକାରେ କିଛି ପ୍ରାମାଣିକ ଗ୍ରନ୍ଥ ମଧ୍ୟ ରହିଛି। କିନ୍ତୁ ସେଗୁଡିକୁ କାମରେ ଲଗାଇବା ପାଇଁ ଟିକେ ମୂଳଦୁଆ ଦରକାର।

# ଗଛରୁ ଔଷଧ ତିଆରି

କେତେ ଜାତିର ଉଦ୍ଭିଦରେ ଔଷଧଗୁଣ ରହିଥିବା କଥା ଜାଣିଲା ପରେ ତାକୁ କାମରେ ଲଗାଇବା କଥା ହୁଏତ ମନକୁ ଆସିବ। ଗଛର ବିଭିନ୍ନ ଅଂଶକୁ ଔଷଧ ଭାବରେ ବ୍ୟବହାର କରିବା ପାଇଁ କେତେ ନିର୍ଦ୍ଦିଷ୍ଟ ବାଟ ରହିଛି। ଦରକାର ସମୟରେ ଗଛଟି ମିଳିପାରୁଥିଲେ ତଟକା ଔଷଧ କରାଯାଇପାରେ। ସାଧାରଣ ଭାବରେ ଗଛର ରସ ବାହାର କରି ବା ତାକୁ ବାଟି କରି ଦିଆଯାଏ। କିନ୍ତୁ ସବୁଠାରେ ବା ସବୁବେଳେ ଦରକାରୀ ଗଛ କିମ୍ବା ଫୁଲଫଳ ଭଳି ତା'ର ଉପଯୋଗୀ ଅଂଶ ମିଳି ନପାରେ। ସେଥିପାଇଁ ଅଧିକାଂଶ ସମୟରେ ବନୌଷଧିଗୁଡିକୁ ଠିକ୍ ସମୟରେ ସଂଗ୍ରହ କରି, ତାକୁ ନରମ ଖରା ବା ଛାଇରେ ଶୁଖାଇ, କେବେ କେବେ ଗୁଣ୍ଡ କରି, ରଖାଯାଏ।

ତଟକା ବା ଶୁଖିଲା ଔଷଧ ଗଛର ବ୍ୟବହାର ପାଇଁ ୫ଟି ମୁଖ୍ୟ ଧାରା ବା *କଷାୟ* ରୂପ ରହିଛି। ଏଗୁଡିକ ହେଉଛି:

୧. ସ୍ୱରସ - କଞ୍ଚା ଗଛର ରସ ବା ଶୁଖିଲା ଗଛପତ୍ରର ସିଝା ପାଣି।

୨. କଲ୍କ - ପଥରରେ ବଟା ହୋଇଥିବା କଞ୍ଚା ବା ଶୁଖିଲା ବନୌଷଧି।

୩. କ୍ୱାଥ - ପ୍ରାୟ ୧୬ଗୁଣ ପାଣିରେ ଫୁଟାଇ, ୪ଗୁଣକୁ ଘନୀଭୂତ ରସ।

୪. ଶୀତକଷାୟ - ଔଷଧକୁ ଛଅ ଗୁଣ ଉଷୁମ ପାଣିରେ ଗୋଟିଏ ରାତି ବତୁରାଇ ଛାଣିବା।

୫. ଫାଣ୍ଟକଷାୟ - ଚ୍ୱରିଗୁଣ ଅତି ଗରମ ପାଣିରେ ପକାଇ ଅଳ୍ପ ସମୟ ପରେ ଚ୍ୱ ଭଳି ଛାଣିବା।

# ଦୁବ

ସଂ ଶତପର୍ବା

*ବିଜ୍ଞାନ ନାମ:* ସାଇନୋଡନ ଡାକ୍ଟିଲନ୍ ପର୍ସ୍. (ପୋଏସି ବଂଶ)



ଏହା ମାଟି ଉପରେ ମାଡ଼ୁଥିବା ଗୋଟିଏ ତୃଣ। ପ୍ରାୟ ସବୁ ଜାଗାରେ ଦୁବ ଦେଖାଯାଏ, ତେଣୁ ଘାସ କହିଲେ ଅନେକ ସମୟରେ ଏହାକୁ ହିଁ ବୁଝାଇଥାଏ। ଏହାର କାଣ୍ଡର ପ୍ରତି ଗଣ୍ଠିରୁ ଚେର ବାହାରି ମାଟିକୁ ଯାଇଥାଏ। ଦୁବର ପତ୍ରଗୁଡିକ ଅତି ସରୁ ଓ ଲମ୍ବା। ପତ୍ରର ରଙ୍ଗ ଗାଢ଼ରୁ ଫିକା ଶାଗୁଆ ହୋଇଥାଏ।

ପୂରା ଦୁବକୁ ବାଟି କରି ବା ତା'ର ରସ ବାହାରକରି ଔଷଧ ଭାବରେ ବ୍ୟବହାର କରାଯାଏ। କ୍ଷତ ବା ଖଣ୍ଡିଆରୁ ରକ୍ତବୁହା ବନ୍ଦ କରିବା ପାଇଁ ଦୁବ କାମ ଦିଏ। ଦୁବର ରସ ନାକରେ ପକାଇଲେ ନାକରୁ ରକ୍ତ ପଡିବା ବନ୍ଦ ହୋଇଯାଏ। ଦେହ ଭିତରେ ରକ୍ତ ଝରିବା ଓ ଅର୍ଶ ରୋଗରେ ଦୁବ ଔଷଧ ଭାବରେ ଖିଆଯାଏ। ବର୍ଷର ସବୁବେଳେ ଓ ପ୍ରାୟ ସବୁ ଜାଗାରେ ମିଳିପାରୁଥିବାରୁ ଏହା ବିଶେଷ ଆଦର ପାଏ।



ଗଛବଇଦ, ସୃଜନିକା, ୧୯୯୭

# ନିମ୍ବ (ନିମ)  ସଂ: ନିମ୍ବ

ବିଜ୍ଞାନ ନାମ: ଆଜାଡିରାକ୍ଟା ଇଣ୍ଡିକା (ମେଲିଏସି ବଂଶ)



ଭାରତର ସବୁଆଡେ ଜଣାଶୁଣା ଏହା ଏକ ବଡ ଗଛ। ଏହାର ପତ୍ରଗୁଡିକ ସରୁ ଓ ଲମ୍ବାଳିଆ, ପତ୍ରର ଅଗ ଗୋଜିଆ, ଧାର କଟା କଟା ଓ ପତ୍ର ବିନ୍ୟାସ ପକ୍ଷଳ ଯୌଗିକ। ବସନ୍ତ ଋତୁରେ ନିମଗଛ ପତ୍ରଝଡା ଦିଏ ଓ ପେଣ୍ଡା ପେଣ୍ଡା ଧଳା ଫୁଲ ଧରେ। ଏହାର ଫଳ ଛୋଟ ଓ ଲମ୍ବାଳିଆ ଏବଂ ସେଥିରେ ଗୋଟିଏ ମଞ୍ଜି ଥାଏ।

ନିମ୍ବ ଗଛର ସବୁଅଂଶ ମଣିଷର କାମରେ ଲାଗେ। ନିମ୍ବ ଛେଲି ପତ୍ର ଚେର ଆଦି ସବୁଥିରୁ ଔଷଧ ହୁଏ। କାଛୁ କୁଣ୍ଡିଆ, ଯାଦୁ, ଛଉ ଓ କୁଷ୍ଠ ଆଦି ଚର୍ମରୋଗ ପାଇଁ ନିମ୍ବତେଲର ବିଶେଷ ବ୍ୟବହାର ରହିଛି। କୀଟନାଶକ ଗୁଣ ଯୋଗୁଁ ଏହା ସାବୁନ, ଟୁଥପେଷ୍ଟ ତିଆରିରେ ଲାଗେ। ଘା' ବା କ୍ଷତ ଧୋଇବା ପାଇଁ ନିମ୍ବପତ୍ର ସିଝା ପାଣି ଭଲ କାମ ଦିଏ। ନିମ୍ବପତ୍ର ଗୁଣ୍ଡ ଓ ନିମ୍ବଜଡ ଖାଇଲେ କୃମି ଓ କ୍ଷତ ଆଦି ଭଲ ହୁଏ।



# ତୁଳସୀ

ସଂ: କୃଷ୍ଣ ତୁଳସୀ, ମଞ୍ଜରୀ

*ବିଜ୍ଞାନ ନାମ:* ଓସିମମ ସାଙ୍କ୍‌ଟମ ଏଲ୍ (ଲାବିଏଟି ବଂଶ)

ଏହା ଭାରତର ପ୍ରାୟ ସବୁଘରେ ପୂଜା ପାଉଥିବା ଗୋଟିଏ ଗଛ। ପ୍ରାୟ ୭୫ସେଣ୍ଟିମିଟର ଉଚ୍ଚତାର ଗୋଟିଏ ଶାଖାପ୍ରଶାଖା ଯୁକ୍ତ ବାର୍ଷିକ ବା ବହୁବାର୍ଷିକ କ୍ଷୁପ। ଏହାର ପତ୍ରଗୁଡିକ ଛୋଟ ଓ ରୁମୁରୁମିଆ, ପତ୍ରଧାର ଅନେକ ସମୟରେ ଦାନ୍ତ ଦାନ୍ତ ହୋଇଥାଏ। ଛୋଟ ଛୋଟ ଫୁଲଗୁଡିଏ ଶୂକୀ ଜତୀୟ ସ୍ତବକରେ ସଜ୍ଜା ହୋଇଥାଏ। ଏହାର ଫଳ ଓ ମଞ୍ଜି ଅତି ଛୋଟ ହୁଏ।

ତୁଳସୀର ପତ୍ର ଓ ମଞ୍ଜି ଔଷଧ ହୁଏ। ଜ୍ୱର ଓ ବିଭିନ୍ନ ଚର୍ମ ରୋଗରେ ଏହା ବିଶେଷ କାମ ଦିଏ। ସାଧାରଣ ଥଣ୍ଡା ଶର୍ଦ୍ଦି ପାଇଁ ମହୁ ଓ ତୁଳସୀ ପତ୍ର ରସ ଏକ ବଡ ଔଷଧି। ଏହାର ପତ୍ରରେ କୀଟନାଶକ ଗୁଣ ରହିଛି। ପୋକ ଓ ବିଛା କାମୁଡା ଜାଗାରେ ତୁଳସୀ ପତ୍ର ଘସିଲେ ଦେହ ଛିଟିକା କମିଯାଏ। ତୁଳସୀର ଅନେକ ଜାତି ଭାଇ ଅଛନ୍ତି। ଅତି କଡା ବାସନା ଥିବା ହୁର୍ଲଭା ବା ବଣ ତୁଳସୀ (*ଓସିମମ ବାସିଲିକମ ଏଲ.*) ଏଥିରୁ ଗୋଟିଏ।

# ବିଛୁଆତି

ସଂ: ବୃଶ୍ଚିକାଲୀ

*ବିଜ୍ଞାନ ନାମ:* ଟ୍ରାଗିଆ ଇନ୍‌ଭଲ୍ୟୁକ୍ରାଟା ଏଲ୍. (ଇଉଫୋର୍‌ବିଏସି ବଂଶ)



ଓଦାଳିଆ ଜାଗାରେ ବା ବର୍ଷା ଦିନରେ ବେଶି ଦେଖାଯାଉଥିବା ଏକ ଛୋଟ କ୍ଷୁପ। ଏହାର ପତ୍ର ପାନ ଆକୃତିର ଓ ଧାର ଦନ୍ତୁରିତ। ପତ୍ର ଓ କାଣ୍ଡରେ ଛୋଟ ଛୋଟ ରୁମ ଭରି ରହିଥାଏ। ଏହି ରୁମ ଯୋଗୁଁ ବିଛୁଆତି ଲାଗିଲେ ଦେହ କୁଣ୍ଡାଇହୁଏ ଓ ଫଳିଯାଏ। ନାଲି ବା ଘୋଡା ବିଛୁଆତି (ଲାପୋର୍ଟିଆ ଇଣ୍ଟରପ୍ଟା ଏଲ୍. ଉର୍ଟିକେସି ବଂଶ) ଏହାର ଆଉ ଗୋଟିଏ ପ୍ରକାର।

ବିଛୁଆତିର ପୂରା ଗଛ ବା ଫଳ ଓ ମୂଳରୁ ଔଷଧ ହୁଏ। ଫଳକୁ ଅଳ୍ପ ପାଣି ଦେଇ ବାଳ ଉପୁଡୁଥିବା ଜାଗାରେ ଘଷିଲେ ବାଳ ଉଠିପାରେ। ବିଛୁଆତି ମୂଳ ପରିସ୍ରା କରାଇବାରେ, ଝାଳ ବୁହାଇବାରେ ଓ ଜର କମାଇବାରେ କାମ ଦିଏ। ବାତଜରରୁ ଫୁଲିଥିବା ଅଙ୍ଗରେ ବିଛୁଆତି ବାଟି ଲଗାଇଲେ ଆରମ୍ଭ ଅବସ୍ଥାରେ ଉପକାର ମିଳେ।

# ଅଁଳା

ସଂ: ଆମଲକୀ

ବିଜ୍ଞାନ ନାମ: ଏମ୍ବ୍ଲିକା ଅଫିସିନାଲିସ୍ ଗେରଟନ୍. (ଇଉଫୋରବିଏସି ବଂଶ)



ମଝିଲା ଉଚ୍ଚତାର ଗୋଟିଏ ଝଙ୍କା ଗଛ। ଏହାର ପତ୍ର ତେନ୍ତୁଳି ପତ୍ର ପରି ଖୁବ୍ ଛୋଟ। ଫୁଲ ଫିକା ସବୁଜ ରଙ୍ଗର ହୁଏ ଏବଂ ମାଈ ଓ ଅଣ୍ଡିରା ଫୁଲ ମିଶି ଛୋଟ ଛୋଟ ପେଣ୍ଡାରେ ରହେ। ଫଳ ମାଂସଳ ଓ ଗୋଲ ଏବଂ ରଙ୍ଗରେ ଫିକା ଶାଗୁଆ

ଆୟୁର୍ବେଦର ତିନି ମୁଖ୍ୟ ଔ... ...ବିତା, ବାହାଡା ଓ ଅଁଳାକୁ ମିଶାଇ ତ୍ରିଫଳା କରାଯାଏ। ଏହି ତ୍ରିଫ... ...ପାଇଁ ସବୁ ଦିଗରୁ ବଡ ଉପକାରୀ। ଅଁଳା ରସର ସ୍ୱାଦ ଅତି କଷା ଓ ସେଥିରେ ବହୁତ ଜୀବସାର 'ଗ' ରହିଥାଏ। ଶୁଖିଲା ଅଁଳା କୋଳି ପାଣିଝାଡା, ନାଳଝାଡା, ପରିସ୍ରାପୋଡା, ଅର୍ଶ, କାଶ ଓ କିଛି ମୂତ୍ର ରୋଗରେ ବ୍ୟବହୃତ ହୋଇଥାଏ। ଅଁଳାର ପତ୍ର ପକାଇଲେ ଗୋଳିଆ ପାଣି ସଫା ହୋଇଯାଏ। ବଟା ଅଁଳା କୋଳି ବା ଅଁଳା ତେଲ ମୁଣ୍ଡବାଳକୁ ନରମ ଓ ଚିକଣ ରଖେ ଅଁଳାଛେଲିସିଝା ପାଣି ଚର୍ମରୋଗରେ କାମ ଦିଏ।



ଫୁଲ



ଫଳ



ଗଛବଇଦ, ସୃଜନିକା, ୧୯୯୭

# ହରିଡା

ସଂ: ହରିତକୀ

*ବିଜ୍ଞାନ ନାମ:* ଟର୍ମିନାଲିଆ ଚେବୁଲା ଗେରଟନ୍. (କମ୍ବ୍ରେଟେସି ବଂଶ)




ଏହା ବଡ଼ ଆକାରର ଏକ ଜଙ୍ଗଲି ଗଛ। ଏହାର କେତେଗୁଡ଼ିଏ ଜାତି ରହିଛି। କିନ୍ତୁ ଔଷଧ ଗୁଣରେ ସମସ୍ତେ ପ୍ରାୟ ସମାନ। ହରିଡାର ପତ୍ର ଅଣ୍ଡାଳିଆ ଓ ଆକାରରେ ବେଶ୍ ବଡ଼। ଫୁଲଗୁଡ଼ିକ ଧଳା ଓ ଶୁଙ୍ଗୀ ଜାତୀୟ ସ୍ତବକରେ ରହିଥାନ୍ତି। ହରିଡା ଫଳ ଦୁଇରୁ ଚାରି ସେଣ୍ଟିମିଟର ଲମ୍ବ ହୁଏ ଓ ପାଞ୍ଚ ଖଣ୍ଡିଆ ଦେଖାଯାଏ।

ଶୁଖିଲା ଫଳ ଔଷଧ ହୁଏ। ସ୍ୱାସ୍ଥ୍ୟ ପାଇଁ ଏହାର ଗୁଣ ଅନେକ। ତେଣୁ ଏହାକୁ ମା' ଭଳି ଦେଖାଯାଏ ଓ ଏଥିରୁ ଖଣ୍ଡେ ସବୁଦିନେ ଖାଇବା ପାଇଁ କୁହାଯାଏ। ପାଟି ଭିତର ଫୁଲିଲେ, ଗଳା ଦରଜ ହେଲେ ବା ତଣ୍ଟି ବସିଗଲେ ଉଷୁମ ହରିଡା ପାଣି କୁଳିରୁ ଉପକାର ମିଳେ। ପୁରୁଣା ଘା', ରକ୍ତଚାପ, ହୃଦରୋଗରେ ମଧ୍ୟ ଏହା କାମ ଦିଏ। ଦାନ୍ତ ଓ ମାଢ଼ିକୁ ଏହା ଦୃଢ଼ କରେ ଓ ରୋଗ ମୁକ୍ତ ରଖେ।

# ବାହାଡା

ସଂ: କର୍ଣଫଳ

ବିଜ୍ଞାନ ନାମ: ଟର୍ମିନାଲିଆ ବେଲିରିକା ଗେରଟନ୍. (କମ୍ବ୍ରେଟେସି ବଂଶ)




ଏହା ମଧ୍ୟ ଏକ ଜଙ୍ଗଲି ବଡ ଗଛ। ଏହାର ବଡ ଓ ଲମ୍ବା ପତ୍ରଗୁଡ଼ିକ ଡାଳର ଅଗରେ ଏକାଠି ଦେଖାଯାଏ। ଶୁକୀ ଜାତୀୟ ସ୍ତବକରେ ଥିବା ଫୁଲଗୁଡ଼ିକ ଛୋଟ ଓ ଫିକା ସବୁଜ ରଙ୍ଗର। ଏଥିରୁ ଏକ କଟୁ ଗନ୍ଧ ବାହାରେ। ପାଉଁଶିଆ ରଙ୍ଗର ଅଣ୍ଡାକାର ଫଳଗୁଡ଼ିକ ଉପରେ ରୁମ ଥାଏ। କିନ୍ତୁ ହରିଡା ପରି ଶିରା ନଥାଏ।

ଏହାର ଶୁଖିଲା ଫଳ ଔଷଧ ହୁଏ। ଝାଡା ରୋଗ ଓ ପେଟଗୋଳମାଳରେ ଏହା ବିଶେଷ କାମ ଦିଏ। ମସ୍ତିଷ୍କର ନାନା ରୋଗ, ଆଖିରୋଗ, ଅର୍ଶ, କୁଷ୍ଠ, ଜଳୋଦରୀ ଓ କେତେ ଜ୍ୱରରେ ବାହାଡା କାମ ଦିଏ। ଏହା ତ୍ରିଫଳାର ଏକ ଅଂଶ। ବାହାଡାକୁ ଘୋରି ଲଗାଇଲେ କୌଣସି କ୍ଷତ ଶୀଘ୍ର ଭଲ ହୋଇଯାଏ। ଏହାର କାଠରୁ ଡଙ୍ଗା ଓ କୃଷି ଉପକରଣ ତିଆରି ହୁଏ।

# ସିଙ୍କୋନା

ସଂ: –

*ବିଜ୍ଞାନ ନାମ:* ସିଙ୍କୋନା ଜାତି (ରୁବିଏସି ବଂଶ)



ବଡ ବା ମଝିଲା ଉଚ୍ଚତାର ଏହି ଗଛଟିର ମୂଳ ଘର ବିଦେଶରେ। କିନ୍ତୁ ମେଲେରିଆ ରୋଗର ଔଷଧ ଭାବରେ ଏହା ଭାରତର ବହୁ ଅଞ୍ଚଳରେ ଚାଷ କରାଯାଏ। ନୀଳଗିରି, ଆସାମ, ଦାର୍ଜିଲିଂ, ସିକିମ ଆଦି ପାହାଡିଆ ଅଞ୍ଚଳର ଚା' ବଗିଚା ପାଖରେ ଏହା ବିଶେଷ ଭାବରେ ଲଗାଯାଉଥିଲା। ଭାରତରେ ମୁଖ୍ୟତଃ ଚାରିଟି ଜାତିର ସିଙ୍କୋନା ଦେଖାଯାଏ। ଏହାର ପତ୍ର ବଡ ହୁଏ, ଫୁଲ ଛୋଟ ଛୋଟ ପେଣ୍ଡାରେ ରହେ ଏବଂ ଫଳ ଲମ୍ବାଳିଆ ହୋଇଥାଏ।

ସିଙ୍କୋନା ଛେଲିରୁ ମିଳୁଥିବା କୁଇନାଇନ୍ ମେଲେରିଆର ଅତି ପୁରୁଣା ମୁଖ୍ୟ ଔଷଧ ଭାବରେ ପ୍ରାୟ ସମସ୍ତଙ୍କୁ ଜଣା। ଏହି ପିତା ଔଷଧ ଜର କମାଏ ଏବଂ ନିମୋନିଆ, ନାଳଝାଡା ଓ ବାତ ଜରରେ ମଧ୍ୟ କାମ ଦେଇଥାଏ। କୁଇନାଇନ୍‌ର ପିତା ଗୁଣ ଯୋଗୁଁ ଅନେକ ସମୟରେ ବାନ୍ତି ଆସେ ଓ ଅଧିକ ପରିମାଣରେ ଖାଇଲେ କେବେ କେବେ ଦେଖିବା ଓ ଶୁଣିବା ଶକ୍ତି ଚାଲିଯାଏ।

# ଗୁଲ୍‌ମୁଗୁରା

ସଂ: ଗୁଲମୋଗର

*ବିଜ୍ଞାନ ନାମ:* ୧. ହାଇଡ୍‌ନୋକାର୍ପସ୍ କୁର୍ଯୀ (ଫ୍ଲାକୁର୍ଟିଏସି ବଂଶ)

୨. ହାଇଡ୍‌ନୋକାର୍ପସ୍ ଲରିଫୋଲିଆ (ଫ୍ଲାକୁର୍ଟିଏସି ବଂଶ)




ଗୁଲ୍‌ମୁଗୁରା ନାମରେ ଜଣା ଏହି ବଡ ଗଛ ଦୁଇଟି ଭିତରୁ ପ୍ରଥମଟି ଭାରତର ଉତ୍ତର-ପୂର୍ବ ଅଞ୍ଚଳରେ ବେଶି ଦେଖାଯାଏ। ଏହାର ପତ୍ରଗୁଡିକ ବେଶ୍ ଲମ୍ୱା। ପତ୍ରର ମୁଣ୍ଡଟି ହଠାତ ଗୋଜିଆ ହୋଇଯାଇଥାଏ। ଏଥିରେ ଛୋଟ ହଳଦିଆ ଫୁଲ ପେଣ୍ଡ ହୋଇ ଫୁଟେ ଏବଂ ଧୂସର ରଙ୍ଗର ଗୋଲ ଫଳରେ ଅନେକ ଟାଣ ମଞ୍ଜି ରହିଥାଏ।




ଦ୍ୱିତୀୟ ଜାତିର ଗଛ ପଶ୍ଚିମଘାଟର ଦକ୍ଷିଣ ଭାଗରେ ଦେଖାଯାଏ। ଏହାର ବକଳ ଖଦଡିଆ ଓ ଧୂସର ରଙ୍ଗର। ପତ୍ର ଲମ୍ୱା ଓ ଅଣ୍ଡାଳିଆ, ପତ୍ରଧାର ଦନ୍ତୁରିତ। ଏହାର ଛୋଟ ଫୁଲ ଫେଣ୍ଟିକିଆ ହୋଇ ଫୁଟେ ଏବଂ ରୁମୁରୁମିଆ ଫଳ ଭିତରେ ଅନେକ ମଞ୍ଜି ଥାଏ।

ଗୁଲମୁଗୁରା ମଞ୍ଜିର ତେଲ କୁଷ୍ଟ ରୋଗର ଏକ ଅତି ପୁରୁଣା ଓ ଉପାଦେୟ ଔଷଧ। ଏହି ଔଷଧ ଖିଆଯାଏ ଓ କ୍ଷତରେ ଲଗାଯାଏ। ଅନ୍ୟ କେତେ ଚର୍ମରୋଗରେ ମଧ୍ୟ ଏହି ତେଲ କାମ ଦେଇଥାଏ।

# ସଦାବିହାରୀ (ଆଇଁଷକାତି) ସଂ: ଗନ୍ଧମାଳତୀ

ବିଜ୍ଞାନ ନାମ: କାଥାରାନ୍ଥସ୍ ରୋଜିଅସ୍ (ଭିନ୍‌କା ରୋଜିଆ) (ଏପୋସାୟାନେସି ବଂଶ)



ବାଡି ବଗିଚାରେ ଲଗାଯାଉଥିବା ଏକ ବହୁବାର୍ଷିକ କ୍ଷୁପ। ଏହାର ପତ୍ର ମୋଟା ଓ ଚିକଣ। ପତ୍ର ଛିଣ୍ଡାଇଲେ କ୍ଷୀର ବାହାରେ। ଧଳା ବା ଗୋଲାପି ସଦାବିହାରୀ ଫୁଲଗୁଡ଼ିକ ଟଗରଫୁଲ ପରି ଦେଖାଯାଏ ଓ ବର୍ଷସାରା ଫୁଟୁଥାଏ। ସରୁ ଛୁଇଁ ଆକୃତିର୍ ଫଳଗୁଡ଼ିକ ଶୁଖିଗଲେ ଫାଟିଯାଏ ଓ ଛୋଟ ମଞ୍ଜିଗୁଡ଼ିକ ବାହାରିଆସେ।

ପୂରା ଗଛଟି ଔଷଧ ହୁଏ। ସଦାବିହାରୀ ପତ୍ରର ରସ ଉଚ୍ଚ ରକ୍ତଚାପ ଓ ରକ୍ତ ଶର୍କରା କମାଇଦିଏ। ତେଣୁ ହୃଦରୋଗ ଓ ମଧୁମେହ ପାଇଁ ଏହାର ବିଶେଷ ବ୍ୟବହାର ରହିଛି। ଏହାର ପତ୍ରକୁ ଛେଚି ଚାଉଳ ଚୂନା ସହିତ ମିଶାଇ ପୋଡା ଘା' ଉପରେ ଦିଆଯାଏ। ଏହାର ଚେରସିଝା ପାଣି ଝାଡା ସଫା କରାଏ ଓ ପତ୍ରର କ୍ୱାଥ ପାଣିଝାଡା ଓ ଆମାଶୟ ଭଲ କରିବାରେ କାମ ଦିଏ। ଏଥିରୁ ମିଳୁଥିବା କିଛି ରାସାୟନିକ ଦ୍ରବ୍ୟ ରକ୍ତଚାପ ଓ ରକ୍ତ କର୍କଟ ରୋଗ ପାଇଁ ଭଲ ଫଳ ଦିଏ।

# ପାତାଳଗରୁଡ

ସଂ: ସର୍ପଗନ୍ଧା

ବିଜ୍ଞାନ ନାମ: ରାଉଓଲ୍‌ଫିଆ ସର୍ପେଣ୍ଟିନା (ଏପୋସାୟାନେସି ବଂଶ)




ବଣ ଜଙ୍ଗଲରେ ଛାଇଆ ଜାଗାରେ ବଢୁଥିବା ମଝିଲା ଆକାରର ଏକ ଗୁଳ୍ମ। ଏହାର ପତ୍ର ଲମ୍ବାଳିଆ, ଅଗ ଗୋଜିଆ ଓ ଡେମ୍ଫ ଛୋଟ। ପ୍ରତି ଗଣ୍ଠିରେ ୩ ବା ୪ଟି କରି ପତ୍ର କାଣ୍ଡକୁ ଘେରି ରହିଥାଏ। ପତ୍ରର ଉପର ଚିକଣ ସବୁଜ ଓ ତଳ ପଟ ଫିକା। ଏହାର ଫୁଲଗୁଡିକ ଧଳା-ଗୋଲାପି ରଙ୍ଗର ହୁଏ ଓ ପେଣ୍ଡା ହୋଇ ଫୁଟେ। ଗୋଲ ଫଳଗୁଡ଼ିକ ପାଚିଗଲେ ଗାଢ ବାଇଗଣି ରଙ୍ଗ ହୁଏ।

ପାକଳ ଗଛର ଚେର ଓ ପତ୍ରରୁ ଔଷଧ ତିଆରି ହୁଏ। ଆଖିର ପରଳ କାଢ଼ିବାରେ, ପ୍ରସବ କରାଇବାରେ, ରକ୍ତଚାପ କମାଇବାରେ ଓ କିଛି ମାନସିକ ରୋଗରେ ବିଶେଷ କାମ ଦିଏ। ଆୟୁର୍ବେଦରେ ଏହାର ବ୍ୟବହାର ଅତି ପୁରୁଣା। ଗଛରୁ ବିଶୁଦ୍ଧ ରାସାୟନିକ ଔଷଧ ତିଆରି ହେବାରେ ଏହା ଗୋଟିଏ ଆଗୁଆ ଗଛ।

# ଇନ୍ଦ୍ରମାରିଷ

ସଂ: ମଞ୍ଜରୀ

ବିଜ୍ଞାନ ନାମ: ଆକାଲାଇଫା ଇଣ୍ଡିକା ଏଲ୍. (ଇଉଫୋରବିଏସି ବଂଶ)



ଅନାବନା ଭାବରେ ବଢୁଥିବା ଗୋଟିଏ ଛୋଟ କ୍ଷୁପ। ପତ୍ର ପତଳା ଓ ଅଣ୍ଡାଳିଆ। ପତ୍ରର ମଝି ଭାଗ ବେଶ୍ ଚଉଡା ହୋଇଥିବାରୁ କିଛିଟା ଠିକିରି ଭଳି ଦେଖାଯାଏ। ପତ୍ରର ଡେମ୍ଫ ଅତି ଲମ୍ବା। ପତ୍ରଧାର ଅଳ୍ପ ଦନ୍ତୁରିତ। ଫୁଲଗୁଡିକ ଲମ୍ବ ଶୁକୀ ସ୍ତବକରେ ଥାଏ। ସ୍ତବକର ତଳ ଆଡକୁ ଥିବା ସ୍ତ୍ରୀ ଫୁଲଗୁଡିକୁ କାହାଳୀ ଭଳି ଉପପତ୍ର ଘେରିରହି ଥାଏ ଓ ବେଶ୍ ସୁନ୍ଦର ଦେଖାଯାଏ। ଖୁବ୍ ଛୋଟ ଫଳଗୁଡିକ ଏହି ଉପପତ୍ରରେ ଲୁଚିରହେ।

ଫୁଲଧରା ଅବସ୍ଥାରେ ପୂରା ଗଛଟି ଔଷଧ ହୁଏ। ଏହାର ରସ ସହଜରେ ବାନ୍ତି କରାଏ, ତେଣୁ ପେଟରୁ ବିଷ ସଫା କରାଇବା ପାଇଁ ଏହାକୁ ଦିଆଯାଏ। ଶ୍ୱାସ ପ୍ରଣାଳୀର ରୋଗ, ଚର୍ମରୋଗ ଓ ପଗ୍ଧ ଘା' ଭଲ କରାଇବାରେ ଏହା କାମ ଦିଏ। ଇନ୍ଦ୍ରମାରିଷ ଚେରର ବାସ୍ନା ବିଲେଇଙ୍କୁ ଉତ୍ତେଜିତ କରେ। ଏହାକୁ ଶୁଙ୍ଘିଲେ ବିଲେଇ ଡିଆଁ ଡେଇଁ ବାଏରେ ଓ ଗଡେ।

# ଡିମିରି (ଡିମ୍ବିରି)  ସଂ: ଉଦୁମ୍ବର

*ବିଜ୍ଞାନ ନାମ:* ଫାଇକସ୍ ରାସେମୋଜା ଏଲ୍. (ମୋରେସି ବଂଶ)





ପୁରୁଷ ଫୁଲ



ସ୍ତ୍ରୀ ଫୁଲ

ଉଦୁମ୍ବରୀ ସ୍ତବକ

*ଡିମିରିର ଫୁଲ ଓ ଫଳ*

ମଝିଲା ଉଚ୍ଚତାର ଗୋଟିଏ ଗଛ। ବକଳ ପାଉଁଶିଆ ଓ ଖଦଡିଆ। ପତ୍ର ଅଣ୍ଡାଳିଆ ଓ ଖାସୁଖାସୁଆ। ପତ୍ର ବା କାଣ୍ଡ ଖଣ୍ଡିଆ ହେଲେ ଅଠାଳିଆ ଧଳା କ୍ଷୀର ଝରେ। ଗିନା ଭଳି ଗୋଟିଏ ମାଂସଳ ପୁଷ୍ପାଧାର ଭିତରେ ଡିମିରିର ସ୍ତ୍ରୀ ଓ ପୁରୁଷ ଫୁଲ ଲାଗି ରହିଥାଏ। ଏହି ପ୍ରକାରର ଫୁଲକୁ *ଉଦୁମ୍ବରୀ ସ୍ତବକ* କୁହାଯାଏ। ପାଉଁଶିଆ-ଶାଗୁଆ ଗୋଲାକାର ଫଳ ଗୁଡିକ କାଣ୍ଡ ଦେହରେ ପେଣ୍ଡା ହୋଇ ଫଳେ ଓ ପାଚିଲେ ଲାଲ୍ ପଡି ବାସ୍ନା ହୁଏ। କିନ୍ତୁ ତା'ର ଭିତରେ ପରାଗଣ କରାଇଥିବା କୀଟର ଅଁଶୋଇ ରହିଥାଏ। ଡିମିରି ଫଳରେ କାଠି ପୂରାଇ ଘର, ଗାଡି ଆଦି ଗଢିବା ଗୋଟିଏ ସୁନ୍ଦର ପିଲାଖେଳ।

ଡିମିରିର ସବୁ ଅଂଶ ଔଷଧ ହୁଏ। ପାଟି, ଜିଭ ଓ ମାଢିର ରୋଗ ପାଇଁ ଏହା ବେଶ ଉପକାରୀ। ପେଟରେ ଅମ୍ଳ, ନାଳ ଓ ପାଣିଝାଡା, ଅର୍ଶ ପାଇଁ ମଧ୍ୟ ଏହା କାମରେ ଲାଗେ। ଏହା ମଧୁମେହ ରୋଗୀର ରକ୍ତ ଶର୍କରା କମାଇପାରେ ବୋଲି ବିଶ୍ୱାସ ଅଛି।



ଉଦୁମ୍ବରର ଫଳ

# ନିର୍ମୂଳୀ

ସଂ: ଆକାଶବଲ୍ଲରୀ

*ବିଜ୍ଞାନ ନାମ:* କୁସ୍‌କୁଟା ରିଫ୍ଲେକ୍ସା (କନ୍‌ଭଲ୍‌ଭୁଲେସି ବଂଶ)







ଚେର ବା ପତ୍ର ନଥିବା ଏକ ଲତାଜାତୀୟ ପରଜୀବୀ ଉଦ୍ଭିଦ। ହଳଦିଆ-ଶାଗୁଆ ରଙ୍ଗର ମେଞ୍ଚାଏ ମୋଟା ସୂତା ଭଳି ଏହା ଅନ୍ୟ ଗଛ ଉପରେ ମାଡିଥାଏ। ସବୁଜକଣା ନଥିବାରୁ ନିର୍ମୂଳୀ ନିଜର ଖାଦ୍ୟ ତିଆରି କରିପାରେ ନାହିଁ। ଏହାର କାଣ୍ଡରୁ ଚେର ଭଳି ଅବଶୋଷିକା ମୂଳ ବାହାରି ମାଡୁଥିବା (ପୋଷକ) ଗଛ ଦେହରେ ପଶେ ଓ ଖାଦ୍ୟ ସଂଗ୍ରହ କରେ। ଏଥିରେ ଛୋଟ ଛୋଟ ଧଳା ବା ଫିକା ଗୋଲାପି ରଙ୍ଗର ଫୁଲ ଫୁଟେ। ଏହାର କଳା ମଞ୍ଜିଗୁଡିକ ଫଳ ଭଳି ଗୋଟିଏ କୋଷରେ ରହିଥାଏ।

ନିର୍ମୂଳୀର ଲତା ଓ ମଞ୍ଜି ଔଷଧ ହୁଏ। ଏହାର ରସ ଅପସ୍ମାର ଏବଂ ଯକୃତ ଓ ପିତ୍ତାଶୟ ରୋଗରେ ଖାଇବାକୁ ଦିଆଯାଏ। ନିର୍ମୂଳୀ ରସ ଲଗାଇଲେ ଚମରୋଗ ଭଲ ହୋଇଯାଏ। ଏହାର ସିଝାପାଣିରେ ଧୋଇଲେ ବ୍ରଣ ଓ ପୂଜ ଘା' ଶୁଖିଯାଏ। ବିଭିନ୍ନ ପେଟରୋଗ ପାଇଁ ଓ ସାଲସା ଭାବରେ ମଧ୍ୟ ନିର୍ମୂଳୀ କାମ ଦିଏ।

# ଅମରପୋଇ

ସଂ: ପାଷାଣଭେଦୀ

ବିଜ୍ଞାନ ନାମ: ବ୍ରାୟୋଫାଇଲମ୍ ପିନାଟମ୍ ଲାମ୍. (କ୍ରାସୁଲେସି ବଂଶ)



ଫୁଲପେଣ୍ଡା



ପତ୍ରରୁ ଅସ୍ଥାନିକ କଳିକା

ଛୋଟ ନରମ କ୍ଷୁପ। ଉଚ୍ଚତାରେ ପ୍ରାୟ ଏକ ମିଟର ହୁଏ। ପତ୍ରଗୁଡିକ ଅଣ୍ଡାକିଆ, ମୋଟା ଓ ସରସ। ପତ୍ରଧାର ଦନ୍ତୁରିତ। ପତ୍ରଧାରରୁ ଚେର ବାହାରି ନୂଆ ଗଛ ହୁଏ। ଘଣ୍ଟି ଭଳି ଦିଶୁଥିବା ଫୁଲଗୁଡିକ ପେଣ୍ଡାରେ ତଳକୁ ମୁହଁ କରି ଝୁଲି ରହିଥାଏ। ଫୁଲ ଦେହରେ ଶାଗୁଆ, ଗୋଲାପୀ ଓ ଧଳା ଛିଟ ଥାଏ। ଶୀତଦିନେ ଫୁଲ ଫୁଟେ ଓ ଖରାଦିନେ ଫଳ ପାଚିଲା ହୁଏ।

ଅମରପୋଇର ପତ୍ରରୁ ଔଷଧ ହୁଏ। ଏହି ପତ୍ରକୁ ସେକି ବଥ, ପୋକ କାମୁଡା ବା ଦରଜ ଜାଗାରେ ପକାଇଲେ ଉପକାର ମିଳେ। ପଗ୍ଧ ବା କାଟି ଛାଡୁଥିବା ଘା' ଶୁଖାଇବାରେ ପତ୍ରଗୁଣ୍ଡ ବା ସେକାପତ୍ର କାମ ଦିଏ। ପତ୍ରକୁ ଛେଚି କ୍ଷତ ଜାଗାରେ ବାନ୍ଧିଲେ ରକ୍ତବୁହା ବନ୍ଦହୁଏ। ପତ୍ରର ରସ ପୋଡା ବା ଫୋଟକା ଜାଗାରେ ଓ କାନପଗ୍ଧରେ କାମ ଦିଏ।

# ପେଡିପେଡିକା

ସଂ: ବିକଙ୍କତା, ଅତିବଳ

ବିଜ୍ଞାନ ନାମ: ଆବୁଟିଲାନ୍ ଇଣ୍ଡିକମ୍ (ମାଲ୍‌ଭେସି ବଂଶ)



ଏହା ବେଶ୍ ଟାଣ ଓ ଧୂସର-ଶାଗୁଆ ରଙ୍ଗର ଏକ କ୍ଷୁପ। ଦେହସାରା ଛୋଟ ରୁମ ଭରି ରହିଥାଏ। ପତ୍ର ପାନପତ୍ର ପରି, କିନ୍ତୁ ଧାର ଦନ୍ତୁରିତ। ପତ୍ର ପତଳା ଓ ଚିକଣ ଏବଂ ମକଚିଲେ ହାତକୁ ଲାଳୁଆ ଲାଗେ। ଫୁଲ ହଳଦିଆ-କମଳା ରଙ୍ଗର। ପତ୍ର, ଫୁଲ ଓ ଫଳର ଡେମ୍ଫ ବେଶ୍ ଲମ୍ବା। ଫଳ କଞ୍ଚାବେଳେ ଶାଗୁଆ ଥାଏ। ଖୁଖିଗଲେ ଧୂସରିଆ-କଳା ରଙ୍ଗର ହୁଏ। ଫଳଗୁଡ଼ିକ ପେଢି ପରି ଦିଶୁଥିବାରୁ ଏହାକୁ ପେଡିପେଡିକା କହନ୍ତି। ଫଳଟି ଶୁଖିଗଲେ ୫ ଫାଳ ହୋଇ ଫାଟିଯାଏ। ଶୁଖିଲା ଫଳରେ ଥିବା ଛୋଟ ଛୋଟ ରୁମ ଦେହରେ ଲାଗିଲେ କୁଣ୍ଡାଇ ହୁଏ।



ପେଡିପେଡିକା ଗଛସିଝା ପାଣିରେ କୁଳି କଲେ ଦାନ୍ତବିନ୍ଧା ଓ ମାଡିର କ୍ଷତ ଭଲ ହୋଇଯାଏ। ବାଥ ଓ ଦରଜ ଜାଗାରେ ଉଷୁମ ପତ୍ରର ସେକ ଦେଲେ ପୀଡା କମେ। ପେଡିପେଡିକା ପିଲାମାନଙ୍କର ଖେଳିବା ଜାମରେ ମଧ୍ୟ ଆହେ।

# ଲାଜକୁଳୀ

ସଂ: ଲଜ୍ଜାଳୁ



*ବିଜ୍ଞାନ ନାମ:* ମାଇମୋସା ପୁଡିକା (ମାଇମୋସି ବଂଶ)

ମାଟି ଉପରେ ଟେକା ହୋଇ ମାଡୁଥିବା ଏକ କଣ୍ଟାଳିଆ ଲତାଜାତୀୟ ଉଦ୍ଭିଦ। ଏହାକୁ ଛୁଇଁଲେ ବା ଅନ୍ଧାର ହେଲେ ଏହାର ପତ୍ର ସବୁ ମୁଜି ହୋଇଯାଏ। ଏହାର ପତ୍ରଗୁଡିକ ଅଁଳା ପତ୍ର ପରି ଛୋଟ ଓ ପକ୍ଷଲ ଯୌଗିକ। ପତ୍ରର ଡେଙ୍ଗ ଲାଲ ବା ସବୁଜ ରଙ୍ଗର। ଗୋଲାପି ରଙ୍ଗର ଫୁଲଗୁଡିକ ଛୋଟ ଗୋଲ ପେଣ୍ଡାରେ ଫୁଟେ। ଫୁଲଗୁଡିକ ଏପରି ସଜାଇହୋଇ ରହିଥାଏ ଯେ ପୂରା ପେଣ୍ଡାଟି ଗୋଟିଏ ଫୁଲ ଭଳି ମନେହୁଏ। ଏଥିରେ ଛୋଟ ଛୁଇଁ ଜାତିର ଫଳ ଧରେ।

ପୂରା ଲାଜକୁଳୀ ଗଛ ବା ମୂଳ କଞ୍ଚାରେ ବା ଶୁଖାଇ ଔଷଧ କରାଯାଏ। ଦାନ୍ତବିନ୍ଧା ଓ ଅନ୍ୟ ଦାନ୍ତରୋଗରେ ଲାଜକୁଳୀର ମୂଳ କାମ ଦିଏ। ଲାଜକୁଳୀ ପତ୍ରକୁ ଛେଚି ହର୍ପିସ୍ କ୍ଷତ ଉପରେ ଦେଲେ ତାହା ଶୁଖିଯାଏ। ପୁରୁଣା ଶ୍ୱସନୀ (ବ୍ରୋଙ୍କାଇଟିସ୍) ରୋଗରେ ମଧ୍ୟ ଲାଜକୁଳୀ ବ୍ୟବହୃତ ହୁଏ।

# ରାସ୍ନା

ସଂ: ସୁଗନ୍ଧମୂଳା




ବିଜ୍ଞାନ ନାମ: ଭାଣ୍ଡା ଟେସେଲାଟା (ରକ୍ସବ.) (ଅରକିଡେସି ବଂଶ)

ଏହା ଗୋଟିଏ ଛୋଟ ପୁଷ୍ପାଳୀ (ଅରକିଡ୍) ଜାତୀୟ ଉଦ୍ଭିଦ। ରାସ୍ନା ଅନ୍ୟ ଗଛ ଉପରେ ବଢେ, କିନ୍ତୁ ତାକୁ ଆଶ୍ରୟ ଦେଇଥିବା ଗଛଠାରୁ ଖାଦ୍ୟ ନିଏନାହିଁ। ଏହାର ସରୁ, ଲମ୍ବ ଓ ମାଂସଳ ପତ୍ରରେ ସବୁଜ କଣିକା ଥାଏ। ତେଣୁ ସେ ନିଜେ ନିଜର ଖାଦ୍ୟ ତିଆରି କରିପାରେ। ରାସ୍ନାରେ କାଣ୍ଡର ପବଗୁଡ଼ିକ ବହୁତ ପାଖାପାଖି ରହିଥାଏ। ଫଳରେ ପ୍ରତି ପବରୁ ପତ୍ର ବାହାରିଥିଲେ ମଧ୍ୟ ସେଗୁଡ଼ିକ ଏକାଠି ଥିବା ଭଳି ଜଣାଯାଏ ଓ କାଣ୍ଡଟି ପୂରା ଲୁଚିକରି ଥାଏ। ଏହାର ଦୁଇ ପ୍ରକାରର ମୂଳ (ଚେର) ଥାଏ। ଉପରିନିବାସୀ (ଏପିଫାଇଟିକ୍) ମୂଳ ଆଶ୍ରୟକୁ ଧରି ରଖିଥାଏ ଏବଂ ଲମ୍ବ ବାୟବୀୟ ମୂଳ ପବନରେ ଝୁଲି ରହି ଜଳୀୟବାଷ୍ପ ସଂଗ୍ରହ କରେ। ରାସ୍ନାର ଫୁଲ ଅତି ସୁନ୍ଦର ଓ ସୁଗନ୍ଧିତ।

ହାତ୍‌ପାପୁଲି ଓ ପାଦତଳିପାର ଜଳାପୋଡା, ବାତରୋଗ, ପିଲାଙ୍କର ଧନୁଷ୍ଟଙ୍କାର ଆଦିରେ ରାସ୍ନା ବ୍ୟବହୃତ ହୁଏ।

# ମଞ୍ଜୁଆଟି (କାଠମଞ୍ଜୁଆଟି) ସଂ ରକ୍ତଗର୍ଭା

*ବିଜ୍ଞାନ ନାମ*: ଲ'ସୋନିଆ ଇନରମିସ୍ (ଲାଇଥ୍ରେସି ବଂଶ)





ଫୁଲ

ମଞ୍ଜୁଆଟି ଗୋଟିଏ ବଡ ବୁଦା ଗଛ। ଶାଖାପ୍ରଶାଖା ମେଲାଇ ଏହା ବେଶ୍ ଝଙ୍କା ହୋଇଥାଏ। ପ୍ରତି ଗଣ୍ଠିରେ ସମ୍ମୁଖୀ ଭାବରେ ଦୁଇଟି ଛୋଟ ଅଣ୍ଡାଳିଆ ପତ୍ର ରହିଥାଏ। ମଞ୍ଜୁଆଟିର ଫୁଲ ରଙ୍ଗରେ ପ୍ରାୟ ଧଳା ଓ ସୁନ୍ଦର ବାସ୍ନା ହୁଏ। ଏହି ଛୋଟ ଫୁଲଗୁଡିକ ଲମ୍ବ ପେଣ୍ଡାରେ ରହିଥାଏ। ଖରାଦିନରେ ଏଥିରେ ଫୁଲ ଫୁଟେ ଓ ଫଳ ଧରେ। ଏହାର ପତ୍ରରେ ତେନ୍ତୁଳି ବା ଅନ୍ୟ ଖଟା ଜିନିଷ ମିଶାଇ ହାତ ରଙ୍ଗ କରାଯାଏ।

ମଞ୍ଜୁଆଟିର ସବୁ ଅଂଶରୁ ଔଷଧ କରାଯାଏ। ମୁଣ୍ଡବିନ୍ଧା, ପେଶିରେ ଦରଜ ଓ ବିନ୍ଧାଛଟିକା, ଆଣ୍ଠୁଗଣ୍ଠି ବାତ, ବଥ ଓ ଘା', ପାଟି ଭିତରର ଘା', ପାଦ ତଳ ପୋଡିବା ଆଦିରେ ଏହା ବ୍ୟବହୃତ ହୁଏ। ଯକୃତ ଓ ପ୍ଲିହା ବଢିବାରେ ଏବଂ କାମଳ ରୋଗରେ ମଞ୍ଜୁଆଟି ବିଶେଷ କାମ ଦେଇଥାଏ।

# କଣ୍ଟାଲେଉଟିଆ

ସଂ: ମାରିଷ

*ବିଜ୍ଞାନ ନାମ:* ଆମାରାନ୍ଥସ୍ ସ୍ପିନୋସସ୍ ଏଲ୍. (ଆମାରାନ୍ଥେସି ବଂଶ)



ଅରମା ଜାଗାରେ ବଢୁଥିବା କ୍ଷୁପ। ଉଚ୍ଚତାରେ ପ୍ରାୟ ଅଧମିଟର ଭିତରେ। ପତ୍ର ଠିକ୍ ଲେଉଟିଆ ଶାଗ ପତ୍ର ଭଳି, ରଙ୍ଗରେ ଗାଢ଼ ସବୁଜ। ଏହାର କାଣ୍ଡ କିନ୍ତୁ ଅଧିକ ମୋଟା ଓ ଟାଣ କଣ୍ଟାରେ ଭର୍ତ୍ତି। ଖଡ଼ାଗଛ ଭଳି ଏହାର ଫୁଲ ଓ ଫଳ ଲମ୍ବ ସ୍ତବକରେ ହୁଏ। କଅଁଳ ପତ୍ରକୁ ତୋଳି ଶାଗ କରାଯାଏ, ହେଲେ କଣ୍ଟା ଯୋଗୁଁ ଏହା ତୋଳିବା କଷ୍ଟ। କଣ୍ଟା ଏହାକୁ ଗୋରୁ ଗାଈଙ୍କଠାରୁ ମଧ୍ୟ ବଞ୍ଚାଏ।

ପୂରା ଗଛଟି ତଟକା ବା ଶୁଖିଲା ଅବସ୍ଥାରେ ଔଷଧ ହୁଏ। ଅନ୍ତନାଳୀରେ କ୍ଷତ, ଅର୍ଶ, ଆମାଶୟ, ପିତ୍ତାଶୟର ପଥର ଆଦି ପାଇଁ ଏହା କାମ ଦିଏ। ବସି ରହିଥିବା ବଥ ବା ଘା'କୁ ପଗ୍ଭାଇ ଫଟାଇ ଦେବା ଓ ରକ୍ତବୁହା ବନ୍ଦ କରିବା ପାଇଁ ମଧ୍ୟ ଏହା ବ୍ୟବହୃତ ହୁଏ। କଣ୍ଟାଲେଉଟିଆର କ୍ୱାଥ ପରିସ୍ରା କରାଇବାରେ ସାହାଯ୍ୟ କରେ।

# ଆମ୍ବିଳିତି (ଅମ୍ଳିତି)   ସଂ: ଘୁଙ୍ଗେରୀ

*ବିଜ୍ଞାନ ନାମ:* ଅଗ୍‌ଜାଲିସ୍ କର୍ଣ୍ଣିକୁଲାଟା ଏଲ୍. (ଅଗ୍‌ଜାଲିସ୍ ବଂଶ)



ପାଣି ଜାଗାରେ ମାଡୁଥିବା ଗୋଟିଏ ଛୋଟ ତୃଣ ଜାତୀୟ ଉଦ୍ଭିଦ। ପ୍ରତି ଗଣ୍ଠିରୁ ଚେର ଦେଇ ଏହା ମାଟି ଉପରେ ମାଡିଥାଏ। ଆମ୍ବିଳିତିର ପତ୍ର ତିନିଖଣ୍ଡିଆ ବା ତ୍ରିପର୍ଣ୍ଣୀ। ଏହାର ଫୁଲ ହଳଦିଆ ରଙ୍ଗର। ପତ୍ର ଓ ଫୁଲ ଆକାରରେ ବେଶ୍ ଛୋଟ। ଅତି ଛୋଟ ଫଳଗୁଡିକରେ ଅନେକ ମଞ୍ଜି ରହିଥାଏ। ଆମ୍ବିଳିତିର ଖଟା ସ୍ୱାଦ ରହିଛି। ଶାଗ ହିସାବରେ ଏହା ସାଧାରଣ ଭାବରେ ବ୍ୟବହୃତ।

ଆମ୍ବିଳିତିର ପତ୍ର ବା ପୂରା ଦେହ ଔଷଧ ହୁଏ। ଏଥିରେ ଅଧିକ ପରିମାଣରେ ଜୀବସାର 'ଗ' ଓ ଅନ୍ୟ କେତେ ଜୈବିକ ଅମ୍ଳ ରହିଥିବାରୁ ତାହା ଖଟା ଲାଗିଥାଏ। ରକ୍ତହୀନତା, ପେଟ ଗୋଳମାଳ, ଅର୍ଶ, ଜର, ଧୁତୁରାର ବିଷ ପ୍ରଭାବ ଆଦିର ଚିକିତ୍ସାରେ ଏହା ଲାଗିଥାଏ। ଆମ୍ବିଳିତି ଭଳି ଦେଖାଯାଉଥିବା ଆଉ ଦୁଇଟି ଗଛ ମଧ୍ୟ ଏହି ପ୍ରଜାତିରେ ରହିଛି। କିନ୍ତୁ ସେମାନଙ୍କର ଫୁଲ ଅଲଗା ରଙ୍ଗର ଓ ଗୁଣ ଧର୍ମ ମଧ୍ୟ ଅଲଗା।

# ପୋଦିନା

ସଂ: ପୁଦିନ୍

ବିଜ୍ଞାନ ନାମ: ମେନ୍ଥା ଜାତି (ଲାବିଏଟେ ବଂଶ)



ନରମ ଧାବକ କାଣ୍ଡ ଥିବା ଏକ କ୍ଷୁପ। ଓଦାଳିଆ ବାଲିଆ ଜାଗାରେ ଏହା ଭୂଇଁ ଉପରେ ଖେଳାଇ ହୋଇ ମାଡେ। ଏହାର ପତ୍ରଗୁଡିକ ଛୋଟ ଓ ମୋଟା, ଆକାରରେ ଅଳ୍ପ ଅଣ୍ଡାଳିଆ। ରଙ୍ଗରେ ଗାଢ ସବୁଜ। ପତ୍ରଧାର ଅଳ୍ପ ଦନ୍ତୁରିତ। ଛୋଟ ଛୋଟ ପେଣ୍ଠାରେ ଲାଲ୍-ବାଇଗଣି ରଙ୍ଗର ଫୁଲ ହୁଏ। ପୋଦିନାର ଅନେକ ଜାତି ରହିଛି। କିନ୍ତୁ ସବୁ ପତ୍ରରେ ସୁଗନ୍ଧ ରହିଛି। ବିଲାତି ପୋଦିନା (ମେନ୍ଥା ପିପରିଟା ଏଲ୍.) ଗଛରୁ ପିପରମିଣ୍ଟ ତିଆରି ହୁଏ।

ଏହାର ପତ୍ର ହେଉଛି ମୁଖ୍ୟ ଔଷଧ। ପତ୍ର ସିଝାପାଣି ଗଣ୍ଠିବାତ, ଅଜୀର୍ଣ୍ଣ, ବାନ୍ତି, କଫ ଆଦିରେ ଉପକାର ଦିଏ। ମକଚ୍ଚପତ୍ର ମୁଣ୍ଡ ବିନ୍ଧା ଓ ଦରଜ ବା ଫୁଲା ଜାଗାରେ ଦେଲେ ଆରାମ ମିଳେ।

# ସୁନୁସୁନିଆ (ସୁଣୁସୁଣିଆ) ସଂ ସୁନିଷନ୍ନକ

ବିଜ୍ଞାନ ନାମ: ମାର୍ସିଲିଆ କ୍ୱାଡ୍ରିଫୋଲିଆ (ମାର୍ସିଲିଏସି ବଂଶ)



ଏହା ନାଳକୂଳିଆ ସନ୍ତସନ୍ତିଆ ଜାଗାରେ, ବିଶେଷ କରି ବର୍ଷାଦିନେ, ବହୁତ ବଢେ। ଏହାର ମୂଳ ଲଟାଇଲା ଭଳି ମାଟିତଳେ ମାଡିଥାଏ ଓ କିଛିକିଛି ଛଡାରେ ଉପରକୁ ପତ୍ର ଦେଇଥାଏ। ଚାରୋଟି ପତ୍ର ଏକାଠି ହୋଇ ଗୋଟିଏ ଡେମ୍ଫରେ ରହେ। ପତ୍ରଖଣ୍ଡଗୁଡିକ ଆମ୍ବିଳିତି ଭଳି ଦେଖାଯାଏ, କିନ୍ତୁ ଆକାରରେ ବଡ ହୋଇଥାଏ। ପତ୍ରର ଡେମ୍ଫ ବେଶ୍ ଲମ୍ବ ହୋଇଥାଏ। ଏହାକୁ ଶାଗ ଭାବରେ ଖିଆଯାଏ। ସୁନୁସୁନିଆ ଜଳପର୍ଣ୍ଣ ଜାତିର ଗୋଟିଏ ଅପୁଷ୍ପକ ଉଭିଦ।

ସୁନୁସୁନିଆ ଶାଗ ଅନିଦ୍ରା ରୋଗ ପାଇଁ ଗୋଟିଏ ଭଲ ଔଷଧ। ପତ୍ରକ୍ୱାଥ ଜର ଛଡାଏ, ମୂଳକୁ ବାଟି ବଥ ବ୍ରଣ ଆଦିରେ ଲେପଦେଲେ ତାହା ଫାଟି ଶୁଖିଯାଏ। ଅପସ୍ମାର, ଉନ୍ମାଦ ଓ ଅନ୍ୟ ମାନସିକ ରୋଗର ଉପଚାର ପାଇଁ ମଧ୍ୟ ଏହା କାମରେ ଲାଗେ।

# ପୁରୁଣୀ (ଘୋଡାପୁରୁଣୀ) ସଂ: ପୁନର୍ନବା

*ବିଜ୍ଞାନ ନାମ:* ବୋଏରହାଭିଆ ଡିଫ୍ୟୁଜା ଏଲ୍. (ନିକ୍ଟାଜିନେସି ବଂଶ)



ତଳେ ମାଡ଼ୁଥିବା ଏକ ବହୁବାର୍ଷିକ ଲତା। ଏହା ଭାରତର ସବୁଆଡେ ଦେଖାଯାଏ ଓ ଅନେକ ଅଞ୍ଚଳରେ ଶାଗ ରୂପରେ ଖିଆଯାଏ। ପୁରୁଣୀର ଲତାଳିଆ କାଣ୍ଡର ପ୍ରତି ଗଣ୍ଠିରୁ ଦୁଇଟି କରି ଅସମାନ ଆକାରର ମୋଟାଳିଆ ପତ୍ର ବାହାରିଥାଏ। ଏହାର ପତ୍ର ପାନ ଭଳି ହୁଏ ଓ ତା'ର ଛୋଟ ଲାଲ ଫୁଲଗୁଡ଼ିକ ସସୀମ ସ୍ତବକରେ ଥାଏ। ଏହାର ଅତି ଛୋଟ ଫଳ ଅଠାଳିଆ ହୋଇଥାଏ। ପତ୍ରର ଉପର ଗାଢ଼ ଶାଗୁଆ ଓ ତଳ ପଟ ପାଉଁଶିଆ ହୁଏ।

ପୁରୁଣୀର ପତ୍ର, ମଞ୍ଜି ଓ ଚେର ଔଷଧ କାମରେ ଲାଗେ। ଏହାର ରସ ପରିସ୍ରା କରାଇବାରେ ସାହାଯ୍ୟ କରେ। ଶ୍ୱାସ, ମେହ ଓ କାମଳ ରୋଗରେ ମଧ୍ୟ ଏହା କାମ ଦିଏ। ଶାଗ ଭାବରେ ଏହାକୁ ନିୟମିତ ଖାଇଲେ ଦେହରେ ରକ୍ତ ବଢ଼ିଥାଏ। ତେଣୁ ଗର୍ଭବତୀ ଓ ପ୍ରସୂତି ସ୍ତ୍ରୀମାନଙ୍କୁ ଓ ରୋଗରୁ ଉଠିଥିବା ଲୋକଙ୍କୁ ଏହା ଏକ ବିଶେଷ ପଥି ଆକାରରେ ଦିଆଯାଏ।

# କୁଆମଇତା

ସଂ ତିକ୍ତକ

ବିଜ୍ଞାନ ନାମ: ଟ୍ରାଇକୋଜାନ୍ଥେସ୍ କୁକୁମେରିନା ଏଲ୍. (କୁକୁର୍‌ବିଟେସି ବଂଶ)



ଜଙ୍ଗଲି ରୂପରେ ବଢୁଥିବା ଗୋଟିଏ ଏକ-ବାର୍ଷିକ ବଡ ଲତା। ଏହା ଅନ୍ୟ ବୁଦା ବା ବଡ ଗଛ ଉପରେ ମାଡିଥାଏ। ପତ୍ରଗୁଡିକ ପାଞ୍ଚ ଖଣ୍ଡିଆ। ପତ୍ର ଓ କାଣ୍ଡରେ ଛୋଟ ଛୋଟ ରୁମ ରହିଥାଏ। ଫୁଲ ଛୋଟ ଓ ଧଳା। ଫଳ ଦେଖିବାକୁ ପୋଟଳ ବା କୁନ୍ଦୁରି ଭଳି। କଞ୍ଚା ଫଳ ସବୁଜ, ପାଚିଲେ ନାରଙ୍ଗି ରଙ୍ଗ ହୁଏ। ଫଳ ବେଶ୍ ପିତା। ଏହାକୁ ପିତା ପୋଟଳ ବା ବଣ ପୋଟଳ ମଧ୍ୟ କୁହାଯାଏ।

କୁଆମଇତାର ପତ୍ର, ଫଳ, ମୂଳ ଓ ଡଙ୍କ ସବୁ ଔଷଧରେ ଲାଗେ। ଏହାର ରସ ଖାଇଲେ କଫ, କୁଣ୍ଡିଆ, ବ୍ରଣ, ଜ୍ୱର ଓ ଅନେକ ପେଟ ରୋଗରୁ ମୁକ୍ତି ମିଳେ। କୁଆମଇତା ମୂଳର କ୍ୱାଥ ବସନ୍ତ ରୋଗ ଭଲ କରିପାରେ ବୋଲି କୁହାଯାଏ।

# ପସାରୁଣୀ

ସଂ: ପ୍ରସାରିଣୀ

ବିଜ୍ଞାନ ନାମ: ପେଡେରିଆ ଫ୍ଲାଣ୍ଡେନ୍‌ସ୍ (ଲାଉର୍) (ରୁବିଏସି ବଂଶ)



ବହୁବାର୍ଷିକ ଲତା। ପତ୍ର ସରୁ ପାନ ପତ୍ର ଭଳି, କିନ୍ତୁ ବେଶି ଲମ୍ବାଳିଆ। ପତ୍ର ଅଳ୍ପ ଖଦଡିଆ ଓ ପତ୍ରଶିରା ସାମାନ୍ୟ ଲାଲ୍ ରଙ୍ଗର। ଏହି ଲତାର ଗଣ୍ଠିରେ ଆଙ୍କୁଶ ନଥାଏ। ପତ୍ରର କଡା ବାସ୍ନା ଥାଏ। ଏହାର ଫୁଲ ଓ ଫଳ ଛୋଟ। ଫୁଲ ଲାଲ୍-ବାଇଗଣି ରଙ୍ଗ ହୁଏ। ପ୍ରତି ଫଳରେ ଗୋଟିଏ ମଞ୍ଜି ଥାଏ।

ପେଟ ଭଲ ରଖିବା ପାଇଁ ଘରେ ଏହା ବିଶେଷ ବ୍ୟବହୃତ। ଅଜୀର୍ଣ୍ଣ, ନାଳ ରକ୍ତ ଝାଡା, କୃମି ଭଳି ସବୁ ପ୍ରକାରର ପେଟ ରୋଗରେ ଏହାର ପତ୍ର ଭଲ କାମ ଦିଏ। ବାତ, ଅତିସାର ଆଦି ରୋଗରେ ମଧ୍ୟ ଏହା ଔଷଧ ହୁଏ। ମା'ର କ୍ଷୀର ବଢାଇବା ପାଇଁ ପସାରୁଣୀ ପତ୍ର ସାହାଯ୍ୟ କରେ। ଗାଈ କ୍ଷୀର ବଢାଇବା ପାଇଁ ଏହା ବିଶେଷ ଭାବରେ ଦିଆଯାଏ।

# କାଇଁଚ

ସଂ: ଗୁଞ୍ଜ

*ବିଜ୍ଞାନ ନାମ:* ଆବ୍ରସ୍ ପ୍ରେକାଟୋରିଅସ୍ ଏଲ. (ଲେଗୁମିନେସି ବଂଶ)



ଧଳା ଓ ଲାଲ ଦୁଇ ପ୍ରକାରର କାଇଁଚ ମିଳେ। ଏହା ଏକ ବହୁବାର୍ଷିକ ଲତା ଅଟେ। ସାଧାରଣତଃ ଜଙ୍ଗଲ ବା ବୁଦାଳିଆ ଜାଗାରେ ଏହା ଦେଖାଯାଏ। ଫୁଲଗୁଡିକ ଛୋଟ ଶିମ୍ବ ଫୁଲ ପରି ହୋଇଥାଏ। ସରୁ ଛୁଇଁ ଭିତରେ ଧଳା ବା ଲାଲ ରଙ୍ଗର ମଞ୍ଜିଗୁଡିକ ରହିଥାଏ। ମଞ୍ଜିର ମୁଣ୍ଡରେ କଳା ଟୋପି ପରି ଦାଗ ଥାଏ। ନାଲି କାଇଁଚ ମଞ୍ଜି ଶୁଖିଗଲେ ସୁନା ରୂପା ଓଜନ କରିବାରେ (ରତି ମାପ) ବ୍ୟବହୃତ ହୁଏ। ଏହାକୁ ମାଳ କରି ମଧ୍ୟ ପିନ୍ଧାଯାଏ।

କାଇଁଚ ଗଛର ପତ୍ର, ଫଳ ଓ ମୂଳ ଔଷଧ ରୂପରେ ହୁଏ। ଶର୍ଦ୍ଦି, କାଶ ଓ ଗଳା ବସିବାରେ ଏହାର ଚେର ଉପକାର ଦିଏ। ଧଳାଛଉ, ଘା', କାନଟଣା, ମୁଣ୍ଡ ବାଳ ଉପୁଡିବା ଆଦି ଅସୁବିଧାରେ କାଇଁଚ କାମରେ ଲାଗେ। ଆଣ୍ଠୁଗଣ୍ଠି ଧରିଲେ ଓ ପକ୍ଷାଘାତ ଅଙ୍ଗରେ କାଇଁଚ ମଞ୍ଜି ବାଟିକରି ଲଗାଯାଏ। କାଇଁଚ ମଞ୍ଜିରେ ଝାଡା, ବାନ୍ତି ଓ ଗର୍ଭପାତ କରାଇବା ଗୁଣ ରହିଛି।

# ପିପ୍ପଳୀ

ସଂ: ପିପ୍ପଳି, ମାଗଧୀ

ବିଜ୍ଞାନ ନାମ: ପାଇପର୍ ଲଙ୍ଗମ୍ ଏଲ୍. (ପାଇପରେସି ବଂଶ)



ସୁଗନ୍ଧିଯୁକ୍ତ ଆରୋହୀ ଲଟା। ସାଧାରଣତଃ ଅନ୍ୟ ଗଛ ଉପରେ ମାଡିଥାଏ। ଏହାର ପତ୍ରଗୁଡିକ ବେଶ୍ ବଡ ଓ ପାନ ଆକୃତିର ହୋଇଥାଏ। ପତ୍ରର ଉପର ପାଖ ଚିକଣ ଓ ଗାଢ ସବୁଜ ରଙ୍ଗ ହୁଏ। ତଳ ପାଖର ରଙ୍ଗ ଫିକା ହୁଏ। ସ୍ତ୍ରୀ ଓ ପୁରୁଷ ଫୁଲ ଅଲଗା ଅଲଗା ଶୁକ୍ରୀ ସ୍ତବକ ରୂପରେ ଫୁଟେ। ସ୍ତ୍ରୀ-ସ୍ତବକର ମାଂସଳ ପୁଷ୍ପଦଣ୍ଡରେ ଗୋଲ ଗୋଲ ଫଳଗୁଡିକ ପୋତିହୋଇ ରହିଥାଏ।

ପୂରା ପୁଷ୍ପଦଣ୍ଡ ସହିତ ଫଳଗୁଡିକୁ ଶୁଖାଇ ରଖାଯାଏ ଓ ଗୁଣ୍ଡ କରି ବା ବାଟି ଔଷଧ କରାଯାଏ। ପେଟ ଖରାପ, ଅଣ୍ଡା, କାଶ, ଜର ଓ ଦେହ ଘୋଳା ଆଦିରେ ଏହା କାମ ଦିଏ। ଏହାର ଚେର ମୁଣ୍ଡ ବିନ୍ଧା ଓ ଅନିଦ୍ରା ଦୋଷ ପାଇଁ ଔଷଧ ହୁଏ। ସାଲସା ଓ ହଜମି ଔଷଧ ଭାବରେ ମଧ୍ୟ ଏହା ବ୍ୟବହୃତ ହୁଏ।

# ପିତାତରଡା

ସଂ: ତିକ୍ତବିମ୍ବୀ

ବିଜ୍ଞାନ ନାମ: ସେଫାଲାଣ୍ଡା ଇଣ୍ଡିକା (କୁକୁରବିଟେସି ବଂଶ)



ଜହ୍ନିଗଛ ପରି ଦେଖାଯାଉଥିବା ଏହି ଲତାଟି ବାଡବୁଦାରେ ମାଡିଥାଏ। ଏହାର ପତ୍ର ଜହ୍ନି ପତ୍ରଠାରୁ ଟିକିଏ ବଡ। ଫଳ ତରଡା ଭଳି ଲମ୍ବାଳିଆ। ଏହାର ସବୁ ଅଂଶ ଖୁବ୍ ପିତା ଲାଗେ, ତେଣୁ ଗାଈଗୋରୁ ଏହାକୁ ଖାଆନ୍ତି ନାହିଁ।

ପିତାତରଡାର ପତ୍ର, ମୂଳ ଓ ଫଳ ଔଷଧ ହୁଏ। ଏହାକୁ ଫୁଟାଇ ସେଇ ପାଣିକୁ ମାଟିରେ ପକାଇଲେ ଉଇ, ପିମ୍ପୁଡି ନଷ୍ଟ ହୋଇଯାଆନ୍ତି। ଫଳର ଚୋପା ଛଡାଇ ଭିତର ଅଂଶକୁ ଗାଈଗୋରୁଙ୍କ ଦେହରେ ଘଷିଲେ ଉକୁଣିଆ ପୋକ ମରିଯା'ନ୍ତି। ଏହାର ପତ୍ରକୁ ରାଶିତେଲରେ ଫୁଟାଇ ମୁଣ୍ଡରେ ଲଗାଇଲେ ଉକୁଣୀ ଚାଲିଯାଏ। ପତ୍ର ବା ମୂଳ ବାଟି ଘା' ଉପରେ ଲଗାଇଲେ ତାହା ଶୁଖିଯାଏ ଓ ଜରରୋଗୀର ଦେହରେ ବୋଳିଲେ ଝାଳ ବାହାରେ। ପିତାତରଡା ଫଳର ରସ ଓ ମଞ୍ଜିର ତେଲ ଚମରୋଗରେ ଉପକାର ଦିଏ। ଫଳକୁ ଚୋବାଇ ଖାଇଲେ ଜିଭର କ୍ଷତ ଭଲ ହୁଏ।

# ଗୁଳୁଚି

ସଂ ଅମୃତବଲ୍ଲୀ

*ବିଜ୍ଞାନ ନାମ:* ଟିନୋସ୍ପୋରା କର୍ଡିଫୋଲିଆ ମିସ୍, (ମେନିସ୍ପର୍ମେସି ବଂଶ)



ଅନ୍ୟ ଗଛ ଉପରେ ମାଡୁଥିବା ଏକ ବଡ ଆରୋହୀ ଲତା । ଏହାର କାଣ୍ଡ ସରସ, ରଙ୍ଗରେ ପାଉଁଶିଆ ଓ ସେଥିରେ ଭାତୁଡି ଭଳି ଅନେକ ଗୋବ ରହିଥାଏ । କାଣ୍ଡର ଗଣ୍ଠିରୁ ସରୁ ସରୁ ଚେର (ବାୟବୀୟ ମୂଳ) ବାହାରିଥାଏ । ଏହାର ପତ୍ରଗୁଡିକ ବଡ ଓ ଦେଖିବାକୁ ପାନପତ୍ର ଭଳି । ଗୁଳୁଚିର ଛୋଟ ଛୋଟ ଫୁଲ ପେଣ୍ଡା ହୋଇ ଖରାଦିନେ ଫୁଟେ ଓ ଶୀତଦିନେ ଫଳ ପାଚିଲେ ଲାଲ ରଙ୍ଗର ହୁଏ ।





ଗୁଳୁଚିର ଶୁଖିଲା କାଣ୍ଡକୁ ଗୁଣ୍ଡ ବା କ୍ୱାଥ କରି ଏବଂ ପତ୍ରକୁ ବାଟି ବା ରସ କରି ଔଷଧ କାମରେ ଲଗାଯାଏ । ପେଟରେ ଅମ୍ଳ, କାମଳ, ପରିସ୍ରା ପୋଡା ରୋଗରେ ଏହା ଦିଆଯାଏ । ଦେହର ଶକ୍ତି ବଢାଇବା ପାଇଁ ସାଲସା ବା ଟନିକ୍ ଭାବରେ ମଧ୍ୟ ଏହା ବ୍ୟବହୃତ ହୁଏ । ନିମ ଗଛରେ ମାଡିଥିବା ଗୁଳୁଚି ଲତାର ଔଷଧ ଗୁଣ ଅଧିକ ବୋଲି ବିଶ୍ୱାସ କରାଯାଏ ।

# ନାଗଅଇରୀ

ସଂ :

ବିଜ୍ଞାନ , ନାମ: ଲାଣ୍ଟାନା କାମାରା ଏଲ୍. (ଭର୍ବେନାସି ବଂଶ)



ବଣୁଆ ଭାବରେ ଖେଳାଇ ହୋଇ ମାଡୁଥିବା ଏକ ନହକା ବୁଦା ଗଛ। ଏହାର କାଣ୍ଡ ଗ୍ରଚି କୋଣିଆ ଓ ଦେହ ସାରା ଛୋଟ ଟାଣ ବଙ୍କୁଲା କଣ୍ଟା ଥାଏ। ତେଣୁ ବାଡ କରିବା ପାଇଁ ଅନେକ ସମୟରେ ଏହି ଗଛ ଲଗାଯାଏ। ପତ୍ର ପାନ ଆକାରର ଓ ଅସମତଳ। ପତ୍ରଧାର ଦନ୍ତୁରିତ। ଧଳା-ଗୋଲାପୀ-ହଳଦିଆ ରଙ୍ଗର ଛୋଟ ଫୁଲଗୁଡ଼ିକ ଛୋଟ ପେଣ୍ଡାରେ ଖୁନ୍ଦି ହୋଇ ରହିଥାଏ। ଗୋଲ ଫଲ ପାଚିଲେ କଳା ରଙ୍ଗ ହୁଏ। ଏହାର ମଞ୍ଜିଟି ଦୁଇ ଫାଳିଆ ହୋଇଥାଏ।

ପୂରା ଗଛଟି ଔଷଧ ତିଆରିରେ ଲାଗେ। ଥଣ୍ଡା-ଶର୍ଦ୍ଦି ଜର, ମେଲେରିଆ, ଆଣ୍ଠୁଗଣ୍ଠି ବାତ ପାଇଁ ଏହାର କ୍ୱାଥ ଭଲ କାମ ଦିଏ। ପତ୍ର ସିଝା ପାଣିରେ ଧୋଇଲେ ଅନେକ ଚର୍ମରୋଗ ଓ କ୍ଷତ ଭଲ ହୁଏ। ପତ୍ରକୁ ମକଚି ଗରମ କରି କ୍ଷତ ଓ ଦରଜ ଉପରେ ବାନ୍ଧିଲେ ଉପକାର ମିଳେ।

# ଅଗରା

(କଣ୍ଟାକୁସୁମ) ସଂ: ସ୍ୱର୍ଣ୍ଣକ୍ଷୀରୀ

*ବିଜ୍ଞାନ ନାମ:* ଆର୍‌ଗେମୋନ୍ ମେକ୍ସିକାନା ଏଲ୍. (ପାପାଭେରାସି ବଂଶ)



ସଲଖ ବଢୁଥିବା ଗୋଟିଏ ଛୋଟ ଏକବାର୍ଷିକ କ୍ଷୁପ। ପତ୍ର ପାଉଁଶିଆ-ଶାଗୁଆ ରଙ୍ଗର ଓ ସେଥିରେ ଧଳା ଶିରା ଥାଏ। ପତ୍ରର ଧାରଗୁଡିକ କଟା କଟା ହୋଇଥାଏ ଓ ସେଥିରେ କଣ୍ଟା ଥାଏ। ଫୁଲ ବଡ ଓ ହଳଦିଆ ରଙ୍ଗର ହୁଏ। ଶୁଖିଲା ଫଳରେ ଅନେକଗୁଡିଏ କଳା ମଞ୍ଜି ଥାଏ। ଅଗରା ଗଛକୁ ଭାଙ୍ଗିଲେ ହଳଦିଆ ରଙ୍ଗର ରସ ଓ ଏକ ପ୍ରକାରର କଡା ଗନ୍ଧ ବାହାରେ। ଅଗରାର ମୂଳ ଘର ମେକ୍ସିକୋ ଦେଶରେ, କିନ୍ତୁ ଏବେ ଏହା ଭାରତ ସାରା ଅଗଛା ଭାବରେ ଦେଖାଯାଏ।

ଅଗରା ମଞ୍ଜି, ପତ୍ର ଓ ମୂଳ ଔଷଧ ହୁଏ। ଗଛର ରସକୁ ଗରମ କରି ସୋରିଷ ତେଲ ମିଶାଇ କାଛୁ କୁଣ୍ଡିଆରେ ଲଗାଯାଏ। ଏହାର ପତ୍ରକୁ ବାଟି ଲେପ ଦେଲେ ପେଟଫମ୍ପା କମିଯାଏ। ଅଗରା ମଞ୍ଜିର ତେଲ ଅତି ବିଷାକ୍ତ। ତେଣୁ ଏହାର ଔଷଧ ଗୁଣ ଥିଲେ ମଧ୍ୟ ଏହାକୁ ଖାଇବା ନିରାପଦ ନୁହେଁ।

# କୋଇଲିଖିଆ (କୋଇଲେଖା) ସଂ: କୋକିଳାକ୍ଷ, ବଜ୍ରକଣ୍ଟକ

*ବିଜ୍ଞାନ ନାମ:* ହାଇଗ୍ରୋଫିଲା ଅରିକୁଲାଟା (ଆକାନ୍ଥେସି ବଂଶ)



ଉଚ୍ଚତାରେ ପ୍ରାୟ ୧.୫ ମିଟର ଯାଏଁ ହେଉଥିବା ଏକ ଛୋଟ କଣ୍ଟାଳିଆ କ୍ଷୁପ। ଏହା ଶାଖା ନଦେଇ ସଳଖ ଭାବରେ ବଢେ। ଚ୍ୱରିକୋଣିଆ ରୁମୁରୁମିଆ କାଣ୍ଡରେ ଗଣ୍ଠିଗୁଡ଼ିକ ଫୁଲିକରି ରହିଥାଏ। ପ୍ରତି ଗଣ୍ଠିକୁ ଘେରିକରି ପ୍ରାୟ ୬ଟି ପତ୍ର ବଳୟ ଆକାରରେ ରହିଥାଏ। ବାହାର ପତ୍ରଟି ଅଧିକ ଲମ୍ବା ହୋଇଥାଏ। ଗଣ୍ଠି ସବୁରେ ଅନେକ୍‌ଗୁଡ଼ିଏ ଟାଣୁଆ କଣ୍ଟା ଓ ଗୋଲାପି-ନୀଳ ରଙ୍ଗର ଫୁଲ ରହିଥାଏ। ସନ୍ତସନ୍ତିଆ ଜାଗାରେ, ବିଶେଷ କରି ବିଲରେ ବା ପୋଖରୀ ତଳେ ଏହା ଦେଖାଯାଏ।

ଗଛର ସବୁ ଅଂଶ ଔଷଧରେ ଲାଗେ। ଜଳଉଦରୀ, କାମଳ, ଆଣ୍ଠୁଗଣ୍ଠି ବାତ, ମେହରୋଗ, କଫରୋଗ ଓ ମୂତ୍ରାଶୟର ରୋଗମାନଙ୍କରେ ଏହା ବିଶେଷ ଉପକାର ଦିଏ। କୃମି, ବ୍ରଣ, କ୍ଷତ ଓ ବିଭିନ୍ନ ଚର୍ମ ରୋଗରେ ମଧ୍ୟ ଏହା କାମ ଦେଇଥାଏ।

# ଦାସକେରେଣ୍ଟା

ସଂ: କୁରୁଣ୍ଟକ

ବିଜ୍ଞାନ ନାମ: ବର୍ଲେରିଆ ଡାଇକୋଟୋମା (ଆକାନ୍ଥେସି - ବଂଶ)




ଅଗଛା ଭାବରେ ବଢୁଥିବା ଏକ ଛୋଟ ଗୁଳ୍ମ। ଏହାର ଗଣ୍ଠିରେ ଟାଣ ଓ ମୁନିଆ କଣ୍ଟା ରହିଥାଏ। ଦାସକେରେଣ୍ଟାର ଫୁଲ ଧଳା, ହଳଦିଆ, ଲାଲ ବା ନୀଳ, ରଙ୍ଗର ହୁଏ। ଏସବୁଗୁଡିକ ବର୍ଲେରିଆ ପ୍ରଜାତିର, କିନ୍ତୁ ରଙ୍ଗ ଅନୁସାରେ ସେମାନଙ୍କର ଜାତି ନାମ ଅଲଗା (କ୍ରିଷ୍ଟାଟା, ପ୍ରାୟୋନିଟିସ୍ ଓ ସିଟାଟା) ହୋଇଥାଏ।

ଦାସକେରେଣ୍ଟା ଗଛର ସବୁ ଅଂଶ ଔଷଧ ହୁଏ। ଏହା କ୍ରୁମି, ଶ୍ୱାସ, ଜର, ବାତ, ଚର୍ମରୋଗ, କଟା ଘା' ଆଦି ପାଇଁ ବ୍ୟବହୃତ ହୁଏ। ଦାନ୍ତମୂଳରୁ ରକ୍ତ ପଡିଲେ ଦାସକେରେଣ୍ଟା ପତ୍ର ଓ ସୈନ୍ଧବ ଲବଣ ମିଶାଇ ପାଟିରେ ଜାକିଲେ ଉପକାର ମିଳେ। ଏହି ପତ୍ରର ରସ ଘଷିଲେ ହାତ ପାଦ ଫାଟେ ନାହିଁ ଓ ମୁଣ୍ଡବାଳ ସୁସ୍ଥ ରହେ। ଭୃଙ୍ଗରାଜ ରସ ସହିତ ଏହାକୁ ରାଶି ତେଲରେ ମିଶାଇ ଲଗାଇଲେ ଅବେଳରେ ବାଳ ପାଚେନାହିଁ। ଦାସକେରେଣ୍ଟା ପତ୍ର ବା ମୂଳ ବାଟିକରି ଲଗାଇଲେ ଶୋଥ ଓ ଜମିଥିବା ରକ୍ତ ଗ୍ଳିଯାଏ।

# ବେଲ

ସଂ: ବିଲ୍ବ

ବିଜ୍ଞାନ ନାମ ଏଗଲ୍ ମାରମେଲୋସ (ରୁଟାସି ବଂଶ)



ଏକ ମଝିଲା ଆକାରର ପର୍ଣ୍ଣମୋଚି ଗଛ। ଭାରତର ସବୁ ଅଞ୍ଚଳରେ ମିଳେ ଓ ସାଂସ୍କୃତିକ ଜୀବନ ସହିତ ଯୋଡ଼ା ହୋଇଥାଏ। ଏହାର ତିନିଟିକିଆ ପତ୍ର ବେଶ୍ ଜଣାଶୁଣା। କାଣ୍ଡରେ ଟାଣ କଣ୍ଟା ରହିଥାଏ। ଫଳଗୁଡିକ ଛୋଟ ପେଣ୍ଟାରେ ହୁଏ ଓ ଫଳର ଖୋପା ଟାଣ ଓ କାଠ ଭଳି ହୋଇଥାଏ। ଫଳ ଭିତରେ ଅଠାଳିଆ ରସ ରହିଥାଏ।

କଞ୍ଚା ଓ ପାଚିଲା ଉଭୟ ଅବସ୍ଥାରେ ବେଲଫଳ ଔଷଧ କାମ ଦିଏ। ପୁରୁଣା ନାଳରକ୍ତ ଝାଡା ଓ ତରଳ ଝାଡାରେ ବ୍ୟବହୃତ ହୁଏ। କଞ୍ଚା ବେଲକୁ ନିଆଁରେ ପୋଡି ନାଳ ରକ୍ତ ଝାଡା ରୋଗୀକୁ ଦିଆଯାଏ। କଞ୍ଚା ବା ଅଧା ପାଚିଲା ବେଲ ଭୋକ ଓ ହଜମ ବଢାଏ। ପାଚିଲା ବେଲର ପଣା ସମସ୍ତଙ୍କ ପାଇଁ ଏକ ସୁସ୍ୱାଦୁ ପାନୀୟ। ଅନେକ ଔଷଧ ସହିତ ଅନୁପାନ ଭାବରେ ବେଲପତ୍ର ଦିଆଯାଏ।

# ଅଙ୍କରାନ୍ତି

ସଂ: କଣ୍ଟକାରୀ

ବିଜ୍ଞାନ ନାମ: ସୋଲାନମ ଜାନ୍ଥୋକାରପୋମ (ସୋଲାନେସି ବଂଶ)




ଭୂଇଁ ଉପରେ ଖେଳାଇ ହୋଇ ବଢୁଥିବା ଏକ ଛୋଟ ବୁଦା। ଏହାର ଡାଳ ଓ ପତ୍ରରେ ଅନେକ ଛୋଟ କଣ୍ଟା ଥାଏ। ରଙ୍ଗ ଓ ଆକାରରେ ଅଙ୍କରାନ୍ତିର ଫୁଲ ବାଇଗଣ ଫୁଲ ଭଳି। ଫଳଗୁଡିକ ଗୋଲ ଓ ଦେଖିବାକୁ ଛୋଟ ବାଇଗଣ ପରି। କଞ୍ଚା ଫଳ ଶାଗୁଆ ଥାଏ ଓ ପାଚିଲେ ହଳଦିଆ ପଡିଯାଏ। ଅଙ୍କରାନ୍ତି ରାସ୍ତା କଡରେ ଓ ଅପନ୍ତରା ଜାଗାରେ ଅରମା ଭାବରେ ବଢ଼େ।

କଅଁଳିଆ ପତ୍ର ଓ ଫଳ ପରିବା କାମରେ ଲାଗେ। ଶୁଖିଲା ଚେରରୁ ଔଷଧ ହୁଏ। କଫ, ଶ୍ୱାସ, ଛାତିରୋଗ, ଜ୍ୱର, ପିତକୋଷରେ ପଥର ଆଦିର ଚିକିତ୍ସାରେ ଏହା ଲାଗିଥାଏ। ଅଙ୍କରାନ୍ତି ଗଛର ରସ ଓ ସୋରିଷ ତେଲ ମିଶାଇ ବାଲିଜଡା ଖାଇଥିବା ଜାଗାରେ ଲଗାଇଲେ ତାହା ଭଲ ହୋଇଯାଏ। ତଣ୍ଟି ବଢିବା, ଆଖି ଧରା, ପୋକକଟା ଦାନ୍ତ, ବ୍ରଣ ଓ ବାଗି ଆଦିର ଚିକିତ୍ସା ପାଇଁ ମଧ୍ୟ ଅଙ୍କରାନ୍ତି କାମ ଦେଇଥାଏ।

# କେଶଦୁଦୁରା (କେଶଦୁରା) ସଂ: କେଶରାଜ

*ବିଜ୍ଞାନ ନାମ:* ଏକ୍ଲିପ୍ଟା ଆଲ୍‌ବା ଏଲ. ସିନ୍. ୱେଡେଲିଆ କାଲେଣ୍ଡୁଲାସିଆ (କମ୍ପୋଜିଟି ବଂଶ)



ଏକ ବହୁବାର୍ଷିକ କ୍ଷୁପ। ପାଣି ପାଖ ସନ୍ତସନ୍ତିଆ ଜାଗାରେ ଅଗଚ୍ଛା ଭାବରେ ବଢ଼େ। ଏହାର ପ୍ରତି ଗଣ୍ଠିରୁ ଚେର ବାହାରିଥାଏ ଓ ଏହା ସାହାଯ୍ୟରେ ତାହା ମାଟି ଉପରେ ମାଡ଼ିଥାଏ। ପ୍ରତି ଗଣ୍ଠିରୁ ଦୁଇଟି କରି ଗାଢ଼ ନୀଳ ରଙ୍ଗର ପତ୍ର ବାହାରିଥାଏ। ଫୁଲ ଧଳା ଓ ଅନେକ ଫୁଲ ଏକାଠି ହୋଇ ମୌଳି ସ୍ତବକରେ ରହିଥା'ନ୍ତି। ସ୍ତବକରେ ଦୁଇ ପ୍ରକାରର ଫୁଲ ଥାଏ। ବାହାରକୁ ଥିବା ଫୁଲ ମାଈ ଓ ଭିତରକୁ ଥିବା ଫୁଲ ଉଭୟଲିଙ୍ଗୀ। ଏହାର ପତ୍ର ଭୃଙ୍ଗରାଜ ପରି ଦେଖାଯାଏ। ଫଳ ଅତି ଛୋଟ ଓ ସେଥିରେ ଗୋଟିଏ ମାତ୍ର ମଞ୍ଜି ଥାଏ।

ଏହାର ରସ ଲାଗିଲେ ହାତ କଳା ପଡ଼ିଯାଏ। ତେଣୁ ଏହାକୁ ବାଳ କଳା କରିବା ପାଇଁ ବ୍ୟବହାର କରାଯାଏ। ଆଖି ରୋଗ ଏବଂ ଖଣ୍ଡିଆ, ବ୍ରଣ, ଧଳାଛଉ ଆଦି ଚମରୋଗରେ ଏହା ବ୍ୟବହୃତ ହୁଏ। ଶୁଖିଲା କେଶଦୁଦୁରା ଭିଜା ରାଶି ବା ନଡ଼ିଆ ତେଲ ମୁଣ୍ଡରେ ଲଗାଇଲେ ବାଳ ଉପୁଡ଼ିବା, ବାଳ ପାଚିଯିବା, ରୁପି, ମୁଣ୍ଡ ଘା' ଆଦି କମିଯାଏ।

# ଥାଲକୁଡି

ସଂ: ମଣ୍ଡୁକପର୍ଣ୍ଣୀ

ବିଜ୍ଞାନ ନାମ: ସେଣ୍ଟେଲା ଏସିଆଟିକା (ଉମ୍ବେଲିଫେରେ ବଂଶ)



ନାଳ, ପୋଖରୀ କୂଳରେ ବା ଅନ୍ୟ ଓଦାଳିଆ ଜାଗାରେ ଭୂଇଁ ଉପରେ ମାଡୁଥିବା ଏକ ଛୋଟ ଲତା। କାଣ୍ଡର ପ୍ରତି ଗଣ୍ଠିରୁ ଚେର ବାହାରି ମାଟିକୁ ଭେଦିଥାଏ। ପତ୍ରଗୁଡିକ ଅଧାଗୋଲ ବା ବୃକକ୍ ଆକାରର, ବ୍ୟାସରେ ୨-୫ ସେଣ୍ଟିମିଟର। ପତ୍ରର ଧାର ଅଳ୍ପ ଦନ୍ତୁରିତ। ବସନ୍ତ ଋତୁରେ ପ୍ରତି ଗଣ୍ଠିରେ ଛୋଟ ପେଣ୍ଡାରେ ଲାଲ୍ ଫୁଲ ଧରେ।

ପୂରା ଗଛକୁ କଞ୍ଚାରେ ରସ କରି, ବାଟି, କିମ୍ବା ଶୁଖାଇ ଔଷଧ କରାଯାଏ। ଥାଲ୍‌କୁଡି ଏକ ସାଲସା ଭାବରେ ବ୍ୟବହୃତ ହୁଏ। ଏହା ମସ୍ତିସ୍କ ପାଇଁ ବିଶେଷ ଉପକାରୀ ବୋଲି ମନେ କରାଯାଏ। ବାତଜ୍ୱର, କୁଷ୍ଟ, ଯକ୍ଷ୍ମା, ଆଣ୍ଠୁଗଣ୍ଠି ବାତ ଆଦିରେ ମଧ୍ୟ ଥାଲ୍‌କୁଡି କାମ ଦିଏ।

# ବ୍ରାହ୍ମୀ

ସଂ: ସୌମ୍ୟବଲ୍ଲୀ

ବିଜ୍ଞାନ ନାମ: ବାକୋପା ମୋନିଏରି ଏଲ (ସ୍କ୍ରୋଫୁଲେସି ବଂଶ)



ପାଣି ପାଖରେ ଓଦା ଭୂଇଁ ଉପରେ ମାଡ଼ୁଥିବା ଏକ ଛୋଟ ଲତାଜାତୀୟ କ୍ଷୁପ। ବ୍ରାହ୍ମୀର ମୁଖ୍ୟ କାଣ୍ଡଟି ମାଟି ଉପରେ ଶୋଇ ରହିଥାଏ ଓ ଶାଖାଗୁଡ଼ିକ ଉପରକୁ ଉଠିଥାଏ। ମାଂସଳ କାଣ୍ଡର ଗଣ୍ଠିରୁ ଚେର ବାହାରିଥାଏ। ଏହାର ପତ୍ରଗୁଡ଼ିକ ଛୋଟ, ଅଣ୍ଡାକୃତି ଓ ମାଂସଳ ହୁଏ। ଫୁଲର ରଙ୍ଗ ନୀଳ-ଧଳା।

ଗଛର ସବୁ ଅଂଶରୁ ଔଷଧ ହୁଏ। ଅପସ୍ମାର, ଉନ୍ମାଦ, ସ୍ନାୟୁ ରୋଗ ଓ ମାନସିକ ବିକାରରେ କାମ ଦିଏ। କଫ, ଶ୍ୱସନୀ, ପେଟବ୍ୟଥା ଓ କୋଷ୍ଠବଦ୍ଧତା ଆଦିରେ ଏହା ବ୍ୟବହୃତ ହୁଏ। ବଥ ବା ଫୁଲାକୁ ପଗ୍ଭଇ ଫଟାଇବା ପାଇଁ ବ୍ରାହ୍ମୀକୁ ବାଟି ଲେପ ଦିଆଯାଏ। ବ୍ରାହ୍ମୀର ରସ ମନେରଖିବା ଶକ୍ତି ବଢ଼ାଏ ବୋଲି ବିଶ୍ୱାସ ରହିଛି।



ଗଛବଇଦ, ସୃଜନିକା, ୧୯୯୭

# ବିଶଲ୍ୟକରଣୀ (ବଣସେବତୀ) ସଂ ବିଶଲ୍ୟକରଣୀ

*ବିଜ୍ଞାନ ନାମ:* ଟ୍ରାଇଡାକ୍ସ ପ୍ରୋକୁମ୍ବେନ୍‌ସ (କମ୍ପୋଜିଟି ବଂଶ)



ମାଟି ଉପରେ ଅଳ୍ପ ମାଡୁଥିବା ଏକ ଛୋଟ କ୍ଷୁପ। ପଡିଆ, ବାଡି ବଗିଚା, ବିଲ ସବୁଠି ଏହା ଦେଖିବାକୁ ମିଳେ। ଏହାର ଜାଣ୍ଡ ଓ ପତ୍ର ସରସ ଓ ନରମ। ଦାନ୍ତ ଦାନ୍ତ ଧାର ଥିବା ବିଶଲ୍ୟକରଣୀ ପତ୍ର ଦେଖିବାକୁ ନିମପତ୍ର ଭଳି, କିନ୍ତୁ ନିମପତ୍ରଠାରୁ ଅଧିକ ଚଉଡା ଓ ମୋଟା। ଫୁଲପେଣ୍ଡାରେ ଅନେକ ଛୋଟ ଧଳା ଫୁଲ ସଜାଇ ହୋଇ ରହିଥାଏ ଓ ଏହାର ଡେମ୍ଫ ଖୁବ୍ ଲମ୍ବା ହୋଇଥାଏ। ସୂର୍ଯ୍ୟମୁଖୀ ବା ଗେଣ୍ଡୁ ଭଳି ଏହି ଫୁଲଗୁଡିକୁ *ମୌଳି ସ୍ତବକ* କୁହାଯାଏ।

ଖଣ୍ଡିଆ ଜାଗାରେ ଏହି ପତ୍ରର ରସ ଲଗାଇଲେ ରକ୍ତ ବୁହା ବନ୍ଦ ହୋଇଯାଏ। ଏହାର ପତ୍ରକୁ ବାଟି ବ୍ରଣ ବା ଅନ୍ୟ କ୍ଷତ ଉପରେ ଲଗାଇଲେ ତାହା ଶୀଘ୍ର ଭଲ ହୋଇଯାଏ। ବିଶଲ୍ୟକରଣୀକୁ ମକଚି, ସେକିକରି ମୋଡି ହୋଇଯାଇଥିବା ବା ମାଡ ହୋଇଥିବା ଜାଗାରେ ବାନ୍ଧିଲେ ଦରଜ ଖାଇଯାଏ। ଏହି ସବୁ ଅସୁବିଧାରେ ବିଶଲ୍ୟକରଣୀର ରସ ମଧ୍ୟ ଖାଇବାକୁ ଦିଆଯାଏ।

# ଅରଖ

ସଂ: ଅର୍କ

ବିଜ୍ଞାନ ନାମ: କାଲୋଟ୍ରୋପିସ୍ ଜାଇଗାଣ୍ଟିଆ (ଆସ୍‌କ୍ଲେପିଏଡେସି ବଂଶ)



ଅରମା ଜାଗାରେ ବଢୁଥିବା ଏକ ବଡ ଗୁଳ୍ମ। ଉଚ୍ଚାରେ ୨ମିଟର ଯାଏଁ ହୁଏ। ଅଣ୍ଡାଳିଆ ଓ ମୋଟା ପତ୍ରରେ ଡେମ୍ଫ ନଥାଏ, ପତ୍ରର ତଳପଟେ ବହଳିଆ ଲୁମ ରହିଥାଏ। କାଣ୍ଡ ନରମ, ଭାଙ୍ଗିଲେ ଅଠାଳିଆ ଧଳା କ୍ଷୀର ବାହାରେ। ପ୍ରତି ଗଣ୍ଠିରୁ ଦୁଇଟି ପତ୍ର ବାହାରିଥାଏ। ପ୍ରତି ଯୋଡା ପତ୍ର ତା'ର ତଳ ବା ଉପର ଯୋଡା ସହିତ ପ୍ରାୟ ୯୦° କୋଣ କରି ରହିଥାଏ (ସମ୍ମୁଖୀ ଚତୁଃସାରୀ ପତ୍ର ବିନ୍ୟାସ)। ଅରଖର ଫୁଲ ଧଳା କିମ୍ବା ଫିକା ବାଇଗଣି ହୁଏ। ଫଳ ଭିତରେ ତୁଳା ଭରି ରହିଥାଏ।

ଉଭୟ ଧଳା ଓ ଲାଲ୍ ଅରଖର ସବୁ ଅଂଶରୁ ଔଷଧ ହୁଏ। ଏସବୁଥିରେ କିଛି ମାତ୍ରାରେ ବିଷାକ୍ତ ଗୁଣ ରହିଛି। ଦରଜ ଥିବା ଗଣ୍ଠି ବା ଫୁଲା ଉପରେ ପତ୍ରକୁ ନିଆଁରେ ସେକି ପକାଇଲେ ବଥା କମିଯାଏ। ଚର୍ମରୋଗ, ଦାନ୍ତବିନ୍ଧା, କ୍ଷତ ଓ ଘା', ଅର୍ଶ, ଗୋଦର, ଗର୍ଭପାତ ଆଦିରେ ମଧ୍ୟ ଅରଖର ବ୍ୟବହାର ଜଣାଅଛି।

# ବେଗୁନିଆ

ସଂ: ସିନ୍ଧୁବର

*ବିଜ୍ଞାନ ନାମ:* ଭିଟେକ୍ସ ନେଗୁଣ୍ଡୋ (ଭର୍ବେନାସି ବଂଶ)



ପ୍ରାୟ ଦୁଇ ମିଟର ଉଚ୍ଚତାର ଗୋଟିଏ ବହୁବାର୍ଷିକ ଗୁଳ୍ମ। ଗାଁ ଗହଳରେ ଅଗଛା ଭାବରେ ବଢେ। ଗଛଟି ଦେଖିବାକୁ ହରଡ ଗଛ ପରି। ଲମ୍ବା ଲମ୍ବ ଡେଙ୍ଗରେ ସରୁ ଲମ୍ବ ପତ୍ର ଥାଏ। ପତ୍ରକୁ ମକଚିଦେଲେ ଏକ କଡା ଗନ୍ଧ ବାହାରେ। ଫୁଲ ପ୍ରାୟ ନୀଳ-ଗୋଲାପି ରଙ୍ଗର ହୁଏ। କେବେ କେବେ ଧଳା ରଙ୍ଗର ମଧ୍ୟ ହୋଇଥାଏ। ଫୁଲଗୁଡିକ ଶାଖାର ଅଗରେ ଲମ୍ବ ସ୍ତବକରେ ରହିଥାଏ।

ବେଗୁନିଆ ପତ୍ରର କଡା ଗନ୍ଧ ଯୋଗୁଁ ଏହାକୁ ଧାନ ଚାଉଳ ଆଦିରେ ମିଶାଇ ରଖିଲେ ପୋକ ଲାଗେନାହିଁ। ବେଗୁନିଆ ପତ୍ରର ଧୂଆଁ ଦେଲେ ଘରେ କୀଟପତଙ୍ଗ ଦୂରେଇ ଯାଆନ୍ତି। ବେଗୁନିଆ ପତ୍ର ଛେଚି ତାକୁ ଉଷୁମ କରି ବାନ୍ଧିଲେ ଆଣ୍ଠୁଗଣ୍ଠି ବାତରେ ଆରାମ ମିଳେ। ଗାଲମୂଳ ଦରଜ, ଦାନ୍ତବିନ୍ଧା, କାନଟଣା ଆଦିରେ ଉଷୁମ ବେଗୁନିଆ ପତ୍ରର ସେକ ଭଲ ଫଳ ଦିଏ। କୃମି, ଶ୍ୱାସରୋଗ, ଚର୍ମରୋଗ, କୁଷ୍ଠ ଓ ଅନ୍ୟ ସ୍ନାୟୁରୋଗରେ ବେଗୁନିଆ କାମ ଦେଇଥାଏ।

# ଦୁଦୁରା

ସଂ: ଧାତୁରା

ବିଜ୍ଞାନ ନାମ: ଦାତୁରା ମେଟେଲ ଏଲ୍ (ସୋଲାନେସି ବଂଶ)



ଅରମା ଭଟରେ ବଢୁଥିବା ଏକ ବୁଦାଳିଆ ଗଛ। ଉଚ୍ଚତାରେ ଏହା ପ୍ରାୟ ଏକ ମିଟର ହୁଏ। ପତ୍ର ବଡ ଓ ଅଣ୍ଡାଳିଆ ଏବଂ ପତ୍ରଧାର ଦନ୍ତୁରିତ ହୋଇଥାଏ। ଫୁଲଗୁଡ଼ିକ ବେଶ୍ ବଡ ଓ ଦେଖିବାକୁ କାହାଳୀ ଭଳି, ରଙ୍ଗରେ ଧଳା ବା ବାଇଗଣି ହୋଇଥାଏ। ଦୁଦୁରାର ଫଳଗୁଡ଼ିକ ଗୋଲ ହୁଏ ଓ କଣ୍ଟାରେ ଘୋଡାଇ ହୋଇଥାଏ।

ଏହାର ଶୁଖିଲା ପତ୍ର, ଫୁଲ ଓ ମଞ୍ଜିରୁ ଔଷଧ ତିଆରି ହୁଏ। ଏହା ଶ୍ୱସନୀ ଓ ଅନ୍ୟ ଶ୍ୱାସ ରୋଗରେ କାମ ଦିଏ। ଏହାର ନିଦ୍ରାକାରକ ଗୁଣ ଥାଏ ଓ ଅଧିକ ମାତ୍ରାରେ ଏହା ବିଷାକ୍ତ ହୁଏ। ଦୁଦୁରାର କଞ୍ଚା ପତ୍ର ଗଣ୍ଠିଫୁଲା ଓ ଦରଜ କମାଏ। କୁଣ୍ଡିଆ, ଉକୁଣି ଓ ରୂପି ଯୋଗୁଁ ବାଳ ଉପୁଡ଼ା ବନ୍ଦ କରିବାରେ ଏହାର ମଞ୍ଜି ଓ ପତ୍ର କାମ ଦିଏ।



ଗଛବଇଦ, ସୃଜନିକା, ୧୯୯୭

# ବାସଙ୍ଗ

ସଂ: ଭାସକ, ସିଂହମୁଖୀ

ବିଜ୍ଞାନ ନାମ: ଆଧାଟୋଡା ଜିଲାନିକା ମେଡିକ. (ଆକାଣ୍ଥେସି ବଂଶ)



ଦୁଇ ମିଟର ଯାଏଁ ବଢୁଥିବା ଏକ ଝଙ୍କା ବୁଦା। ଜଅଁଳ ଡାଳଗୁଡିକ ଲୋମଶ, ଓସାରିଆ ପତ୍ରର ଅଗ ଗୋଜିଆ। ପତ୍ରର ଉପର ଚିକଣ, ତଳପଟ ଟିକିଏ ଖଦଡିଆ। ପତ୍ରର ରଙ୍ଗ ହଳଦିଆ-ଶାଗୁଆରୁ ଗାଢ ଶାଗୁଆ। କାଣ୍ଡର ଗଣ୍ଠିରେ ଶୂକୀ ସ୍ତବକରେ ଫୁଲ ଧରେ। ଦୁଇ ପ୍ରକାରର ବାସଙ୍ଗ ଗଛରେ ଫୁଲ ଧଳା ରଙ୍ଗର ବା ଗୋଲାପି-ବାଇଗଣି ରଙ୍ଗର ହୁଏ। ବାସଙ୍ଗ ପତ୍ରର କଡା ଗନ୍ଧ ରହିଛି, ତେଣୁ ତାକୁ ଗାଈଗୋରୁ ଖାଆନ୍ତି ନାହିଁ। ଫୁଲରେ ପାଖୁଡାଗୁଡିକ ସଜାଇ ହୋଇ ଗୋଟିଏ ସିଂହର ମୁହଁ ଭଳି ଦେଖାଯାଏ।

ପୂରା ବାସଙ୍ଗ ଗଛ ଔଷଧ ହୁଏ। କଫ ତରଳାଇ ବାହାର କରିଦେବାରେ ଏହା କାମ ଦିଏ। ଶର୍ଦ୍ଦି ଓ ଶ୍ୱାସର ଚିକିତ୍ସା ପାଇଁ ଏହା ବିଶେଷ ଭାବରେ ବ୍ୟବହୃତ ହୁଏ। ବାସଙ୍ଗ ଗଛସିଝା ପାଣିରେ ଗାଧୋଇଲେ ବା ତା'ର ବାମ୍ପ ନିଶ୍ୱାସରେ ନେଲେ ଜମିଥିବା କଫ ସଫା ହୋଇଯାଏ। ଅର୍ଶ ପାଇଁ ମଧ୍ୟ ବାସଙ୍ଗ ଉପକାର ଦିଏ।



ଫୁଲର ପାଖୁଡା

# ଗଇସ (ଗୟସ)   ସଂ: ଦ୍ରୋଣପୁଷ୍ପୀ, ଶିବପ୍ରିୟା

*ବିଜ୍ଞାନ ନାମ:* ଲିଉକାସ୍ ଆସ୍ପେରା (ଲାବିଏଟି ବଂଶ)



ପ୍ରାୟ ଅଧ ମିଟର ଉଚ୍ଚତାର ଏକ ଗନ୍ଧଯୁକ୍ତ ବାର୍ଷିକ କ୍ଷୁପ। ବର୍ଷାଦିନେ ପଡିଆ, ବାଡିବଗିଚ୍ଚ ସବୁଠାରେ ଦେଖାଯାଏ। ଲମ୍ବାଳିଆ ପତ୍ରର ଧାର ଦାନ୍ତ ଦାନ୍ତ। ପତ୍ରଗୁଡିକରେ ଛୋଟ ଛୋଟ ରୁମ ଥାଏ ଓ ତେଣୁ ହାତକୁ ଏହା ଖାସୁଖାସୁଆ ଲାଗେ। ଫୁଲପେଣ୍ଡାଟି ଗୋଟିଏ ଛୋଟ ବଲ ଆକାରର ହୋଇଥାଏ। ଏଥିରେ ଧଳା ରଙ୍ଗର ଛୋଟ ଫୁଲଗୁଡିକ ଉପପତ୍ର ସହିତ ମିଶି ପ୍ରତି ଗଣ୍ଠିରେ ଘେରିପଟେ ଖଞ୍ଜି ହୋଇ ରହିଥାଏ।

ଗୟସ ପତ୍ରର ରସ କାଶ, ଶର୍ଦ୍ଦି, ମୁଣ୍ଡବିନ୍ଧା ଓ ଚର୍ମ ରୋଗରେ ଭଲ ଫଳ ଦିଏ। କାମଳ, ମୁତ୍ର ଓ ଯକୃତ ରୋଗରେ ମଧ୍ୟ ପତ୍ରର ରସକୁ ବ୍ୟବହାର କରାଯାଏ। ବିଷ କାଟିବା ପାଇଁ, ଜର, ପିତ୍ତ, କଫ, କାଶ, ଶ୍ୱାସ ଆଦି ରୋଗ ପାଇଁ ମଧ୍ୟ ଗଇସ କାମରେ ଲାଗେ। ପରିମାଣ ଅଧିକ ହେଲେ ଏହା ଗର୍ଭପାତ କରାଇପାରେ।

# ଅପମାରଙ୍ଗ

ସଂ: ଅପମାର୍ଗ

*ବିଜ୍ଞାନ ନାମ:* ଆକିରାନ୍ଥେସ୍ ଆସ୍‌ପେରା ଏଲ୍. (ଆମାରାନ୍ଥେସି ବଂଶ)



ଟାଣ କାଣ୍ଡ ଥିବା ଓ ସଳଖ ବଢୁଥିବା ଏକବାର୍ଷିକ କ୍ଷୁପ। ଉଚ୍ଚତାରେ ଏହା ୩୦ ରୁ ୯୦ ସେଣ୍ଟିମିଟର ହୁଏ ଓ ଅଗଛା ଭାବରେ ସବୁଆଡେ ବଢେ। ଏହାର ଶାଖାଗୁଡିକ ଖେଳାଇ ହୋଇଥାଏ ଓ ଉପର ଶାଖା ଅଧିକ ମୋଟା ହୁଏ। ଗୋଟିଏ ଅତି ଲମ୍ବ ସ୍ତବକରେ ଛୋଟ ଛୋଟ ଫୁଲଗୁଡିକ ରହିଥାଏ। ଶୀତଦିନେ ଏହାର ଫୁଲ ଧରେ ଓ ଖରାଦିନରେ ମଞ୍ଜି ପାକଳ ହୁଏ। ଏହାର ପତ୍ର ଖଡା ପତ୍ର ଭଳି ଦେଖାଯାଏ।

ଅପମାରଙ୍ଗର ସବୁ ଅଂଶ ଔଷଧ ହୁଏ। ବିରୁଡି ଭଳି ବିଷାକ୍ତ ପୋକ କାମୁଡା ଜାଗାରେ ପତ୍ରକୁ ବାଟି ଲଗାଯାଏ। ପାଣିଝାଡା ଓ ପେଟମରା (କୋଲିକ୍), ଅର୍ଶ, କାଶ ଓ କିଛି ମୂତ୍ର ରୋଗ ପାଇଁ ଏହା ବ୍ୟବହୃତ ହୁଏ। ଗର୍ଭପାତ ପରେ ରକ୍ତବୁହା ବନ୍ଦ କରିବାରେ ଏହା କାମଦିଏ।

# ବାଡିଅଁଳା

ସଂ: ବାଟ୍ୟା

ବିଜ୍ଞାନ ନାମ: ଫିଲାନ୍ଥସ୍ ନିରୁରି ଏଲ୍. (ଇଉଫୋର୍‌ବିଏସି ବଂଶ)



ଏହା ୩୦ ରୁ ୪୫ ସେଣ୍ଟିମିଟର ଉଚ୍ଚ ଏକ କ୍ଷୁପ । ଓଦାଳିଆ ଜାଗାରେ ବା ବର୍ଷାଦିନେ ସବୁଆଡେ ଉଠିଥାଏ । ଏହାର ପତ୍ରଗୁଡିକ ଛୋଟ, ଦେଖିବାକୁ ଅଁଳା ବା ତେନ୍ତୁଳି ପତ୍ର ଭଳି । କାଣ୍ଡର ଗ୍ରଣ୍ଠିପଟକୁ ଡାଳଗୁଡିକ ସଜାଇ ହୋଇ ରହିଥାଏ । ପ୍ରାୟ ପୂରା ଡାଳଟି ପତ୍ରରେ ଲୁଚିଥାଏ ଓ ଯୌଗିକ ପତ୍ର ଭଳି ମନେ ହୁଏ । ଡାଳର ତଳ ପଟକୁ ପ୍ରତି ପତ୍ରକକ୍ଷରେ ଫୁଲ ଧରେ ଓ ଅତି ଛୋଟ ଫଳ ହୁଏ ।

ପୂରା ଗଛଟି ଔଷଧ ହୁଏ । କଞ୍ଚା ଗଛ ଖଣ୍ଡିଆ ଓ ଘା'କୁ ଶୁଖାଇବାରେ ସାହାଯ୍ୟ କରେ । ଖାଲି ବା ହଳଦୀ ସହ ବାଟି ଦେହରେ ଲଗାଇଲେ ବିଭିନ୍ନ ଚର୍ମରୋଗ ଭଲ ହୁଏ । ବାଡିଅଁଳା ଗଛକୁ ରାଶି, ଜଡା ବା ସୋରିଷ ତେଲରେ ବତୁରାଇ ବା ତେଲରେ ଗଛର ରସକୁ ମିଶାଇ ଲଗାଇଲେ ଘା', ଚମରୋଗ ଓ ମୁଣ୍ଡରୁ ବାଳ ଉପୁଡିବା ଆଦି ଭଲ ହୁଏ । ଜର ଓ ଜଣ୍ଡିସ, ଶ୍ୱେତପ୍ରଦର ଓ ବହୁମୁତ୍ର ରୋଗରେ ମଧ୍ୟ ଏହା କାମରେ ଲାଗେ ।

# ବଜ୍ରମୂଳୀ (ବଳା)

ସଂ ବାତ୍ୟାଳକ

*ବିଜ୍ଞାନ ନାମ:* ସିଡା କର୍ଡିଫୋଲିଆ (ମାଲ୍‌ଭେସି ବଂଶ)



ଶାଖା ମେଲାଇ ସଳଖ ବଢୁଥିବା ଏକ ଛୋଟ କ୍ଷୁପ। କାଣ୍ଡ ଓ ଶାଖାରେ ଛୋଟ ରୁମ ଭରି ରହିଥାଏ। ପତ୍ର ମନ୍ଦାର ପତ୍ର ଭଳି, କିନ୍ତୁ ତା'ଠାରୁ ବହୁତ ଛୋଟ। ପତ୍ରର ଡେମ୍ଫ ବେଶ୍ ଲମ୍ବା ଓ ପତ୍ରଧାରରେ ସରୁ ଦାନ୍ତ ଥାଏ। ଫୁଲ ଛୋଟ, ହଳଦିଆ ମିଶା କମଳା ରଙ୍ଗର ଓ ତା'ର ଡେମ୍ଫ ମଧ୍ୟ ଲମ୍ବା। ଏକାଭଳି କିଛି ଗୁଣ ଦେଖାଉଥିବା ସିଡା ପ୍ରଜାତିର ଚାରିଟି କ୍ଷୁପକୁ ଆୟୁର୍ବେଦରେ *ବଳା ଚତୁଷ୍ଟୟ* କୁହାଯାଏ।

ବଜ୍ରମୂଳୀର ସବୁ ଅଂଶରୁ ଔଷଧ ହୁଏ। ଆୟୁର୍ବେଦରେ ଏହା ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ବନୌଷଧି ଏବଂ ଏହାର ଅନେକ ବ୍ୟବହାର ରହିଛି। ବିଭିନ୍ନ ରୋଗରେ ଔଷଧ ହେବା ସହିତ ଶାରୀରିକ ଓ ସ୍ନାୟବିକ ଦୁର୍ବଳତା ଦୂର କରିବା ପାଇଁ ବଜ୍ରମୂଳୀ ଏକ ସାଲସା ଭାବରେ ବ୍ୟବହୃତ ହୁଏ। ଯକ୍ଷ୍ମା ଓ ବହୁମୂତ୍ର ଭଳି ଗୁରୁତର ରୋଗରେ ବଜ୍ରମୂଳୀ କାମ ଦେଇଥାଏ।

# ମୁଥା

ସଂ: ଶ୍ରୀଭଦ୍ରା, ମୁସ୍ତ

ବିଜ୍ଞାନ ନାମ: ସାଇପେରସ୍ ରୋଟଣ୍ଡସ୍ (ସାଇପରେସି ବଂଶ)




ଏଣେତେଣେ ବଢୁଥିବା ଏକ ଘାସଜାତୀୟ ଉଦ୍ଭିଦ। ଏହାର ମାଂସଳ କାଣ୍ଡଟି ମାଟି ତଳେ ମାଡିଥାଏ ଓ ମଝିରେ ମଝିରେ ଏଥିରୁ ପତ୍ରଗୁଡ଼ିକ ଉପରକୁ ବାହାରିଥାଏ। ମୁଥାର ପତ୍ରଗୁଡ଼ିକ ଧାନପତ୍ର ପରି ଦେଖାଯାଏ, କିନ୍ତୁ ବେଶି ମୋଟା ଓ ଲମ୍ବରେ ଛୋଟ ହୁଏ। ମାଟିତଳେ ପତ୍ରର ମୂଳରେ କାଣ୍ଡର ଗଣ୍ଠି ଫୁଲି ରହିଥାଏ। ଏହି ମୂଳର କଡ଼ା ବାସ୍ନା ଥାଏ।

ମୁଥାମୂଳର ଚ୍ଛେପାକୁ ଛଡାଇ ଶୁଖାଯାଏ ଓ ଶୁଖିଲା ମୂଳକୁ ଚୁର୍ଣ୍ଣ କରି ଔଷଧ କରାଯାଏ। ଅଜୀର୍ଣ୍ଣ, ଝାଡା, ବାନ୍ତି, ଛାତିପୋଡା, ଅଗ୍ନିମାନ୍ଦ୍ୟ ଆଦି ପେଟରୋଗ ପାଇଁ ଏହା ଭଲ ଔଷଧ। ମୁଥାକୁ ବାଟି ଲଗାଇଲେ ଓ ଖାଇଲେ ଦରଜ, କ୍ଷତ ଓ ଘା'ରେ ଉପକାର ମିଳେ। ଘା'ରୁ ପୂଜ ଧୋଇବା ପାଇଁ ମୁଥାସିଝା ପାଣି କାମ ଦିଏ। କଫ, କାଶ ଓ ଅପସ୍ମାର ପାଇଁ ମଧ୍ୟ ମୁଥା ବ୍ୟବହୃତ ହୁଏ। ଏହି ଘାସ ଖାଇଲେ ଗାଈ ଭଲ କ୍ଷୀର ଦିଏ ବୋଲି ବିଶ୍ୱାସ ରହିଛି।



ଗଛଚଇଦ, ସୃଜନିକା, ୧୯୯୭

# ଚକୁଣ୍ଡା (ଘୋଡା ଚକୁଣ୍ଡା)      ସଂ: ଚିକଙ୍କତା

ବିଜ୍ଞାନ ନାମ: କାସିଆ ଅକ୍ସିଡେଣ୍ଟାଲିସ୍ ଏଲ୍. (ସିଜାଲପିନିଏସି ବଂଶ)




ଅଗଛା ଭାବରେ ବଢୁଥିବା ଗୋଟିଏ ଛୋଟ ବୁଦା। କାଣ୍ଡ ଟାଣ। ପତ୍ର ଯୌଗିକ ଓ ପକ୍ଷଳ, ଡେମ୍ଫ ଲମ୍ବା। ପତ୍ରରୁ ଅଳ୍ପ କଡା ଗନ୍ଧ ବାହାରେ। ଅଳ୍ପ ସଂଖ୍ୟାର ଛୋଟ ହଳଦିଆ ଫୁଲ ଧରେ। ଲମ୍ବ, ଚେପ୍ଟା ଓ ଅଳ୍ପ ବଙ୍କୁଲା ଖଇରିଆ ରଙ୍ଗର ଛୁଇଁରେ ୨୫-୩୦ଟି ମଞ୍ଜି ରହିଥାଏ। ଏଥିରେ ପ୍ରାୟ ବର୍ଷ ସାରା ଫୁଲ ଫଳ ହେଉଥାଏ, ବର୍ଷା-ଶରତ ଋତୁରେ ଅଧିକ ହୁଏ।

ମଞ୍ଜି, ପତ୍ର ଓ ମୂଳରୁ ଔଷଧ ହୁଏ। ଉଚ୍ଚ ରକ୍ତଚାପ, ମେଲେରିଆ, କୋଷ୍ଠବଦ୍ଧତା ଓ ଅନେକ ଚର୍ମରୋଗରେ ଏହା କାମ ଦିଏ। କୋମଳ ଗ୍ରନ୍ଥିରେ ବା ଦେହର ଅନ୍ୟ ଜାଗାରେ ଲସିକା ବା ରକ୍ତ ଜମି ପାଚିଗଲେ (ସେଲୁଲାଇଟିସ୍, ମାଷ୍ଟାଇଟିସ୍) ଏହାର ପତ୍ରକୁ ଛେଚି ଘଷିଲେ ଉପକାର ମିଳେ। ଖାଇବାର ମାତ୍ରା ଅଧିକ ହେଲେ ଝାଡା ବାନ୍ତି ହୁଏ।

# ଚିତାକୁଟି (ଦୁଧିଲତା)

ସଂ: ନାଗାର୍ଜୁନ

ବିଜ୍ଞାନ ନାମ: ଇଉଫୋର୍‌ବିଆ ହିର୍‌ଟା (ଇଉଫୋର୍‌ବିଏସି ବଂଶ)



ଅନାବନା ହୋଇ ପ୍ରାୟ ସବୁଆଡେ ବଢୁଥିବା ଏକ କ୍ଷୁପ ଜାତୀୟ ଉଦ୍ଭିଦ। ମାଟି ଉପରେ ଏହା ବଙ୍କେଇକରି ରହିଥାଏ ଓ ଲମ୍ବ ବା ଉଚ୍ଚାରେ ୫୦ ସେଣ୍ଟିମିଟର ପର୍ଯ୍ୟନ୍ତ ହୁଏ। ଏହାର କାଣ୍ଡ ରୁମୁରୁମିଆ ହୋଇଥାଏ। ପ୍ରତି ଗଣ୍ଠିରେ ସମ୍ମୁଖୀ ଭାବରେ ଦୁଇଟି ଛୋଟ ମୋଟାଳିଆ ପତ୍ର ଓ ଧଳା--ସାଗୁଆ ରଙ୍ଗର ଛୋଟ ଛୋଟ ଫୁଲ ପେନ୍ଥା ହୋଇ ରହିଥାଏ। ପତ୍ରର ଧାର ଦାନ୍ତ ଦାନ୍ତ ହୋଇଥାଏ ଏବଂ ଛୋଟ ଲୋମଶ ଫଳଗୁଡିକରେ ମାଟିଆ ରଙ୍ଗର ତିନିକୋଣିଆ ମଞ୍ଜି ଥାଏ। କାଣ୍ଡ ବା ପତ୍ରକୁ ଛିଣ୍ଡାଇଲେ ଧଳା କ୍ଷୀର ବାହାରେ।

ଫୁଲ ଓ ଫଳ ଧରିଥିବା ପୂରା ଗଛକୁ ଶୁଖାଇ ଔଷଧ କରାଯାଏ। ଭାତୁଡି, ବିଣ୍ଡି ଓ ଆଖିର ଆଲୁଅ ଉପରେ ଏହାର ରସ ଲଗାଯାଏ। ଶ୍ୱସନୀ, ଶ୍ୱାସ, କଫ ଆଦି ରୋଗରେ ଏହା ବ୍ୟବହୃତ ହୁଏ। ରକ୍ତସ୍ରାବ ଓ ଖର ନିଶ୍ୱାସ କମାଇବାରେ, ପ୍ରସୂତି ସ୍ତ୍ରୀମାନଙ୍କର କ୍ଷୀର ବଢାଇବାରେ, କୃମି ଦୋଷରେ ମଧ୍ୟ ଏହା କାମ ଦେଇଥାଏ।

# ଅପରାଜିତା

ସଂ: ଗିରିକର୍ଣ୍ଣିକା, ବିଷ୍ଣୁକ୍ରାନ୍ତା

*ବିଜ୍ଞାନ ନାମ:* କ୍ଲିଟୋରିଆ ଟରନାଟିଆ (ଲେଗୁମିନେସି ବଂଶ)



ବାଡ଼ିବଗିଚ୍ଚରେ ଲଗାଯାଉଥିବା ବା ଅଗଛା ଭାବରେ ଏଣେତେଣେ ବଢୁଥିବା ଗୋଟିଏ ବହୁବାର୍ଷିକ ଲତା। ଏହାର ଚେର ମୋଟା ଓ କାଣ୍ଡ ବେଶ୍ ଟାଣ। ଲତାଟି ଅନ୍ୟ ଗଛ ବା ବୁଦାର ଆଶ୍ରୟରେ ବଢେ। ପତ୍ର ପକ୍ଷଲ ଯୌଗିକ ଓ ଏକାନ୍ତର। ଫୁଲ ଧଳା ବା ନୀଳ ରଙ୍ଗର ଓ ଦେଖିବାକୁ ଖୁବ୍ ସୁନ୍ଦର। ଫୁଲର ପାଖୁଡ଼ାଗୁଡ଼ିକ ଅସମାନ ହୋଇଥାଏ। ଚେପଟା ଓ ଲମ୍ବ ଛୁଇଁ ଫଳ ଭିତରେ ମଞ୍ଜି ରହିଥାଏ।

ଅପରାଜିତାର ମଞ୍ଜି ଓ ମୂଳ ଔଷଧ ହୁଏ। ଜର, କାଶ ଓ ଆଖିରୋଗ ପାଇଁ ଏହା ବ୍ୟବହୃତ ହୋଇଥାଏ। ଧଳା ଅପରାଜିତା ଗଛକୁ ବାଟି ଗୁଆଘିଅ ସହ ମିଶାଇ ଖାଇଲେ ଗଳଗଣ୍ଡ ରୋଗ ଭଲ ହୁଏ। ଏହାର ମୂଳକୁ ବାଟି ଲଗାଇଲେ ଶ୍ଳୀପଦ (ଗୋଦର) ଫୁଲା କମିଯାଏ।

# ଗଙ୍ଗଶିଉଳି

ସଂ: ପାରିଜାତ

*ବିଜ୍ଞାନ ନାମ:* ନିକ୍ଟାନ୍ଥେସ୍ ଆର୍ବୋରଟ୍ରିଷ୍ଟିସ୍ (ଓଲିଏସି ବଂଶ)



ଏକ ମଧ୍ୟମ ଧରଣର ବହୁବାର୍ଷିକ ଗଛ। ପତ୍ରର ଆକୃତି ଛୋଟ ପାନପତ୍ର ପରି ଓ ପତ୍ରଧାର କଟା କଟା ହୋଇଥାଏ। ପତ୍ରଗୁଡିକ ଟାଣ, ଖସଖସିଆ ଓ ଭାରି ପିତା। ଶରତ ଋତୁରେ ଫୁଲ ଫୁଟେ। ନାଲି ଡେମ୍ଫ ଉପରେ ଧଳା ଫୁଲ ବହୁତ ସୁନ୍ଦର ଓ ସୁଗନ୍ଧିତ। ଫୁଲଗୁଡିକ ରାତିରେ ଫୁଟେ ଓ ସକାଳକୁ ଝଡିଯାଏ। ଚେପ୍ଟା ଫଳ ଶୁଖିଗଲେ ମାଟିଆ ରଙ୍ଗର ହୋଇଯାଏ।

ଏହାର ଚେର, ପତ୍ର ଓ ଡାଳ ଔଷଧ ଭାବରେ କାମରେ ଲାଗେ। ଗଙ୍ଗଶିଉଳୀ ପତ୍ର ମାଲେରିଆରେ ଓ ବେଶି ଦିନ ଧରି ଲାଗିରହୁଥିବା ଜରରେ ବିଶେଷ ଫଳ ଦିଏ। ଆନ୍ତ୍ରିକ, କୃମି, କଫ, ଆଣ୍ଠୁଗଣ୍ଠି ବାତ ଆଦିରେ ମଧ୍ୟ ଏହା ବ୍ୟବହୃତ ହୁଏ। ଗଙ୍ଗଶିଉଳି ମଞ୍ଜିକୁ ବାଟି ମୁଣ୍ଡରେ ଲଗାଇଲେ ରୂପି ଛାଡିଯାଏ।

# ସୁନାରୀ

ସଂ: ସୁବର୍ଣ୍ଣିକା

*ବିଜ୍ଞାନ ନାମ:* କାସିଆ ଫିଷ୍ଟୁଲା ଏଲ୍ (ସିଜଲ୍‌ପିନିଏସି ବଂଶ)



ଗୋଟିଏ ମଝିଲା ଉଚ୍ଚତାର ଗଛ। ପତ୍ରଗୁଡିକ ଚିକ୍କଣ ଓ ଗାଢ ସବୁଜ ରଙ୍ଗର, ପତ୍ରବିନ୍ୟାସ ପକ୍ଷଳ ଯୌଗିକ। ଏହାର ଫୁଲଗୁଡିକ ସୁନା ଭଳି ଉଜଳ ହଳଦିଆ ରଙ୍ଗର ହୁଏ ଓ ଲମ୍ବ ପେନ୍ଥାରେ ଝୁଲୁଥାଏ। ବସନ୍ତ ଋତୁରେ ପତ୍ର ସବୁ ଝଡିଯାଏ କିନ୍ତୁ ଗଛଟି ଫୁଲରେ ଭରି ରହିଥାଏ। ସୁନାରୀର ଫଳଗୁଡିକ ଲମ୍ବ ଓ ଗୋଲ ବାଡି ଭଳି ହୋଇଥାଏ। ଏହା ଭିତରେ ଥାକ ଥାକ ହୋଇ ଅନେକ ଚେପଟା ଗୋଲ ମଞ୍ଜି ରହିଥାଏ।

ଗଛର ସବୁ ଅଂଶ, ବିଶେଷ କରି ଚେର, ଔଷଧ ତିଆରିରେ ଲାଗେ। ଝାଡା ସଫା କରିବାରେ ଏହା ବିଶେଷ କାମ ଦିଏ। ବିଭିନ୍ନ ଚର୍ମ ରୋଗ, ବିଷାକ୍ତ ପୋକ କାମୁଡା, ଗଣ୍ଠି ଦରଜ, ମାଡି ଓ ତଣ୍ଟିଫୁଲା ଆଦିରେ ସୁନାରୀର ଚେର ଓ ପତ୍ର ବିଶେଷ କାମ ଦିଏ।

# ହାଡଭଙ୍ଗା

ସଂ: ବଜ୍ରାଙ୍ଗୀ

ବିଜ୍ଞାନ ନାମ: ଭାଇଟିସ୍ କ୍ୱାଡ୍ରାଙ୍ଗୁଲାରିସ୍ ଏଲ୍. (ଭିଟାସି ବଂଶ)



ଏହା ଏକ ଦୁର୍ବଳ ଗୁଳ୍ମ, ଲତା ଭଳି କିଛି ଆଶ୍ରୟ କରି ମାଡିଥାଏ । ଏହାର ମାଂସଳ ଓ ସରସ କାଣ୍ଡ ମୋଟା ଓ ଚ୍ତୁରିକୋଣିଆ ହୋଇଥାଏ । ଗଣ୍ଠି ଜାଗାରେ କାଣ୍ଡଟି ଚିପିହୋଇ ରହିଥାଏ, ତେଣୁ ପବଗୁଡିକ ପରିଷ୍କାର ବାରି ହୋଇଯାଏ । ଗଣ୍ଠିରୁ ଗୋଟିଏ କରି ପତ୍ର ବାହାରିଥାଏ (ଏକାନ୍ତର ପତ୍ର ବିନ୍ୟାସ), କିନ୍ତୁ ଅନେକ ସମୟରେ ଏଥିରେ ପତ୍ର ନଥାଏ । ପତ୍ରର ବିପରୀତ ପଟରେ ଆକର୍ଷି ବାହାରିଥାଏ ଓ ମାଡିବାରେ ସାହାଯ୍ୟ କରେ । ଏହାର ଫୁଲଗୁଡିକ ଛୋଟ ଓ ଧଳା ଏବଂ ଛୋଟ ଗୋଲାକାର ଫଳରେ ବହୁତ ମଞ୍ଜି ଥାଏ ।

ହାଡଭଙ୍ଗାର କାଣ୍ଡ ବା ମୂଳକୁ ବାଟି ଭଙ୍ଗା ହାଡ ଉପରେ ଲେପ ଦେଇ ବାନ୍ଧି ରଖିଲେ କିଛି ଦିନ ଭିତରେ ତାହା ଯୋଡି ହୋଇଯାଏ । ହାଡ ଯୋଡେଇ ପାଇଁ ଏହାର ରସ ମଧ୍ୟ ଖାଇବାକୁ ଦିଆଯାଏ । ଆମବାତ, ଅର୍ଶ, କୃମି, ଆଣ୍ଠୁଗଣ୍ଠି ଫୁଲା, ଦରଜ, ଅଷ୍ଟାବାତ, ଗଣ୍ଠିବାତ ପାଇଁ ମଧ୍ୟ ଏହା ବ୍ୟବହାର କରାଯାଇଥାଏ ।

# ଘିକୁଆଁରୀ

ସଂ: ଘୃତକୁମାରୀ

*ବିଜ୍ଞାନ ନାମ:* ଆଲୋଏ ଇଣ୍ଡିକା (ଲିଲିଏସି ବଂଶ)



ଛୋଟ ଉଚ୍ଚତାର ଏକ ବହୁବାର୍ଷିକ କ୍ଷୁପ। ଏହାର ମୂଳରୁ ୩୦ ରୁ ୪୫ ସେ.ମି. ଲମ୍ବର ମାଂସଳ ପତ୍ର ସବୁ ବାହାରିଥାଏ। ପତ୍ରର ଧାରରେ ଛୋଟ ଛୋଟ କଣ୍ଟା ଥାଏ। ପତ୍ରକୁ ଭାଙ୍ଗିଲେ ଭିତରୁ ଲାଳୁଆ ଥଣ୍ଡା ରସ ବାହାରେ। ଶୀତଦିନ ଶେଷ ଆଡକୁ ଏଥିରେ ହଳଦିଆ ବା ଲାଲ ରଙ୍ଗର ଫୁଲ ଫୁଟେ। ଏହି ଗଛ ସାଧାରଣତଃ ବାଲିଆ ମାଟିରେ ଭଲ ବଢେ।

ଘିକୁଆଁରୀ ପତ୍ରର ଉପରେ ଥିବା ପତଳା ଚମକୁ ଛଡାଇ ଦେଇ ଭିତରର ମାଂସଳ ଅଂଶ ବା ତା'ର ଲାଳୁଆ ରସକୁ ଔଷଧ କରାଯାଏ। ଏହି ରସ ପିତା ଲାଗେ, ତେଣୁ ଲୁଣ ବା ଗୁଡ଼ ମିଶାଇ ଖିଆଯାଏ। ଏହାକୁ ଘଷିଲେ ମୁଣ୍ଡ ଥଣ୍ଡା ରହେ ଓ ମୁଣ୍ଡ ବୁଲେଇବା ଭଲ ହୋଇଥାଏ। ପୋଡା ଓ ମକଚ୍ଚ ଜାଗାରେ ଘିକୁଆଁରୀ ରସ କାମ ଦିଏ। ଶ୍ୱେତପ୍ରଦର, କୋଷ୍ଠକାଠିନ୍ୟ, ବାୟୁଦୋଷ, କୃମି ଓ ଅନ୍ୟ ପେଟରୋଗରେ ଏହି ଗଛର ରସ ବ୍ୟବହୃତ ହୋଇଥାଏ।

# ଭୂଇଁନିମ୍ବ

ସଂ କିରାତତିକ୍ତ

ବିଜ୍ଞାନ ନାମ: ଆଣ୍ଡ୍ରୋଗ୍ରାଫିସ୍ ପାନିକୁଲାଟା ନିସ୍ (ଆକାନ୍ଥେସି ବଂଶ)




ଏହା ଶାଖାପ୍ରଶାଖା ଥିବା ଗୋଟିଏ ଛୋଟ ଏକବାର୍ଷିକ କ୍ଷୁପ। ଏହାର ପତ୍ର ଦେଖିବାକୁ ନିମପତ୍ର ଭଳି ଓ ଗଛର ସବୁ ଅଂଶ ପିତା ଲାଗେ। ଏଥିପାଇଁ ଏହାକୁ ଭୂଇଁନିମ୍ବ କୁହାଯାଏ। ଏହାର ଫୁଲଗୁଡିକ ଛୋଟ ଓ ଗୋଲାପି ରଙ୍ଗର। ଫଳ ଲମ୍ବା ଛୁଇଁ ରୂପରେ ହୁଏ ଏବଂ ଶୁଖିଗଲେ ଫାଟିଯାଏ (ସ୍ଫୋଟକ ଜାତୀୟ)।

ଗଛର ସବୁ ଅଂଶରେ ପିତାରସ ରହିଥାଏ ଓ ଔଷଧରେ ଲାଗେ। ଜ୍ୱର, କୃମି, କଫ, କାଶ, ଯକୃତରୋଗ, ବଦହଜମୀ ଓ ସାଧାରଣ ଦୁର୍ବଳତା ଭଳି ରୋଗରେ ଏହା କାମ ଦିଏ। ସମତଳ ଅଞ୍ଚଳର ଭୂଇଁନିମ୍ବ ହିମାଳୟର ଆଖପାଖରେ ବଢୁଥିବା ଚିରେଇତା ଭଳି କାମ ଦେଇଥାଏ।

# ଜଡା (ଗବ) ସଂ: ଏରଣ୍ଡ

ବିଜ୍ଞାନ ନାମ: ରିସିନସ୍ କମ୍ୟୁନିସ୍ ଏଲ୍. (ଇଉଫୋର୍‌ବିଏସି ବଂଶ)



ଗବ ବା ଜଡା ପଡିଆ ଜମିରେ ବଢୁଥିବା ଗୋଟିଏ ବଡ ଗୁଳ୍ମ। ଏହାର ପାଉଁଶିଆ ରଙ୍ଗର ପତ୍ର ଆକାରରେ ବେଶ୍ ବଡ ଓ ଖଣ୍ଡିତ ହୋଇଥାଏ। ପତ୍ରଧାର ଦାନ୍ତ ଦାନ୍ତ ଓ ଫୁଲଗୁଡିକ ସସୀମ ସ୍ତବକରେ ଥାଏ। ଫଳର ଉପର କଣ୍ଟାଳିଆ ଓ ସେଗୁଡିକ ସ୍ଫୋଟକ ଜାତୀୟ ହୋଇଥାଏ। ଗବ ଗଛ ସାଧାରଣତଃ ଏକବାର୍ଷିକ ହୁଏ, କିନ୍ତୁ ବହୁବାର୍ଷିକ ଗଛ ମଧ୍ୟ ଦେଖାଯାଏ।

ଏହି ଗଛର ଚେର, ପତ୍ର ଓ ଶୁଖିଲା ମଞ୍ଜିରେ ଔଷଧ ଗୁଣ ରହିଥାଏ। ଜଡା ମଞ୍ଜିର ତେଲ ଔଷଧ ଓ ଅନ୍ୟ କେତେ କାମରେ ଲାଗେ। ଜଡାତେଲ ଓ ତା'ର କଅଁଳ ପତ୍ର ଝାଡା ସଫା କରାଏ। ବିଭିନ୍ନ ମଲମ ତିଆରିରେ ଓ ଆଣ୍ଠୁଗଣ୍ଠି ବାତରେ ମାଲିସ କାମରେ ଜଡାତେଲ ଲାଗିଥାଏ। ଗଣ୍ଠିରେ ଦରଜ ଓ ଫୁଲା ଲାଗିରହିଲେ ଗବ ଚେରର କ୍ୱାଥ ଖାଇବାକୁ ଦିଆଯାଏ। ଗବ ପତ୍ରର ରସ ମଶା ମାଛିଙ୍କୁ ଦୂରେଇ ରଖେ।



ଫୁଲ



ଫଳ

# ଫାର୍ଶୀକୋଳି

ସଂ: ପାରୁଣ

ବିଜ୍ଞାନ ନାମ: ଗ୍ରେୱିଆ ହେନେସିଆନା ହୋଲ୍ (ଟିଲିଏସି ବଂଶ)



ଏକ ବଡ ଗୁଳ୍ମ ବା ଛୋଟ ଗଛ। ବକଳ ପାଉଁଶିଆ ଓ ଖଦଡିଆ। ଏହାର ଡାଳଗୁଡିକ ବେଶ୍ ନହକା ଓ ଛତା ଭଳି ଖୋଲାଇହୋଇ ଝୁଲି ରହିଥାଏ। ବଡ ବଡ ଅଣ୍ଡାଳିଆ-ଗୋଲ ପତ୍ରର ତଳପଟ ରୁମରୁମିଆ। ହଳଦିଆ ଫୁଲ ପେଣ୍ଡା ପେଣ୍ଡା ହୋଇ ଫୁଟେ। କୋଳି ଗୋଲ ଓ ଛୋଟ, ପାଚିଲେ ପ୍ରାୟ କଳା ରଙ୍ଗ। ଖରା ଓ ବର୍ଷାଦିନେ ଫୁଲ ଓ ଫଳ ଧରେ।

ଫାର୍ଶୀକୋଳିର ଫଳ, ପତ୍ର ଓ ଚେରରୁ ଔଷଧ ହୁଏ। ପତ୍ରକୁ ସେକି ବଥ ବା ବ୍ରଣ ଉପରେ ପକାଇଲେ ଶୁଖିବାରେ ସାହାଯ୍ୟ କରେ। ଆଣ୍ଠୁଗଣ୍ଠି ବାତ ପାଇଁ ଚେର କାମ ଦିଏ। ଫାର୍ଶୀକୋଳି ଗଛରୁ ବାହାରୁଥିବା ଅଠାର ବତୁରା ପାଣି ଝାଡା ସଫା କରାଏ, ତଣ୍ଟି ଦରଜ କମାଏ, ଦାନ୍ତ ଓ ମାଢିକୁ ଶକ୍ତ କରେ।



ଗଛବଇଦ, ସୃଜନିକା, ୧୯୯୭

# ଗଛ ବର୍ଣ୍ଣନାର ଧାରା

ପରିଶିଷ୍ଟ ୧

କୌଣସି ଉଦ୍ଭିଦ ବିଷୟରେ ସୂଚନା ଦିଆନିଆ ପାଇଁ ଉଦ୍ଭିଦବିଜ୍ଞାନରେ କିଛି ସ୍ୱତନ୍ତ୍ର ନୀତି ନିୟମ ରହିଛି। ଆମର ନିତିଦିନିଆ ଭାଷାରେ ପ୍ରତି ଶବ୍ଦର କିଛି ନିର୍ଦ୍ଦିଷ୍ଟ ଅର୍ଥ ଥିଲା ଭଳି ଗଛଚିହ୍ନାଳୀଙ୍କର ଶବ୍ଦ ବା ସଙ୍କେତ ସବୁ ନିର୍ଦ୍ଦିଷ୍ଟ କଥାକୁ ବୁଝାଏ। ଏ ବିଷୟରେ କିଛି ସାଧାରଣ ସୂଚନା ଅତି ସଂକ୍ଷିପ୍ତ ରୂପରେ ଏଠାରେ ଦେଉଛୁ।

ଗଛ ଚିହ୍ନଟ ଓ ବର୍ଣ୍ଣନା ପାଇଁ କାମରେ ଲାଗୁଥିବା ମୁଖ୍ୟ ଗୁଣଗୁଡିକ ହେଉଛି:

୧. *ପରିବେଶ:* କେଉଁଠି ବଢେ ? ଓଦା ବା ସନ୍ତସନ୍ତିଆ, ବାଲିଆ, ଶୁଖିଲା, ଅରମା, ଘଞ୍ଜଙ୍ଗଲ।

୨. *ପ୍ରକୃତି:* ଆକାର ଓ କାଣ୍ଡର ଗଠନକୁ ନେଇ ଉଦ୍ଭିଦଗୁଡିକୁ ଦୁଇ ମୁଖ୍ୟ ଶ୍ରେଣୀରେ ରଖାଯାଏ:

*ସବଳ* (ସଳଖ) ବା *ଦୁର୍ବଳ* (ଲତା)।



ସଳଖ କାଣ୍ଡ ଥିବା ଗଛକୁ ତିନି ଶ୍ରେଣୀରେ ରଖାଯାଏ:

*କ୍ଷୁପ* - କାଣ୍ଡ ଛୋଟ ଓ ନରମ।

*ଗୁଳ୍ମ* - ମଝିଲା ଆକାରର (ଉଚ୍ଚତା ପ୍ରାୟ ୬ ମିଟର ଭିତରେ), କାଣ୍ଡ ଟାଣ କିନ୍ତୁ ବଡ ଗଣ୍ଡି ନଥାଏ।

*ବୃକ୍ଷ* - ଆକାରରେ ବଡ (ସାଧାରଣତଃ ୬ ମିଟରରୁ ଅଧିକ ଉଚ୍ଚ), କାଣ୍ଡ ଟାଣ ଓ ମୋଟା ଗଣ୍ଡି ଥାଏ।

ଲତାଗୁଡିକୁ ଦୁଇ ମୁଖ୍ୟ ଶ୍ରେଣୀରେ ରଖାଯାଏ:

*ସର୍ପିଣୀ* - ମାଟି ଉପରେ ମାଡିଥାଏ ।

*ଆରୋହୀ ବା ରୋହିଣୀ* - ଅନ୍ୟ ଗଛ ଆଦିକୁ ଧରି ଉପରକୁ ଉଠିଥାଏ ।









*ସର୍ପିଣୀ* : କ. ଧାବକ (ଦୁବ), ଖ. ନମିତ (ପୋଇ), ଗ. ପାର୍ଶ୍ୱାରୋହୀ (ବିଶଲ୍ୟକରଣୀ) *ଆରୋହୀ* (ଶିମ୍ବ)

ଏହାଛଡା କେତେ ପ୍ରକାରର ବିଶେଷ କାଣ୍ଡ (ପରିବର୍ତ୍ତିତ ଓ ରୂପାନ୍ତରିତ) ମଧ୍ୟ ଦେଖାଯାଏ ।

୩. *ମୂଳ*: ଦୁଇ ମୁଖ୍ୟ କିସମର -

*ଆଦିମୂଳ ସଂସ୍ଥା* - ଗୋଟିଏ ଲମ୍ବ ଓ ମୋଟା ମୂଳରୁ ସରୁ ଚେର ବାହାରିଥାଏ ।

*ଗୁଚ୍ଛମୂଳ ବା ତାନ୍ତବ ମୂଳ* - ଅନେକ ସରୁ ଚେର ମେଞ୍ଚା ହୋଇ ଥାଏ



*ଆଦିମୂଳ ସଂସ୍ଥା*



*ଗୁଚ୍ଛମୂଳ (ତାନ୍ତବମୂଳ)*

ଏହାଛଡା ଅନେକ ସ୍ୱତନ୍ତ୍ର ପ୍ରକାରର ମୂଳ ମଧ୍ୟ ଦେଖିବାକୁ ମିଳେ ।

୪. ପତ୍ର: ଉଦ୍ଭିଦ ଚିହ୍ନିବା ପାଇଁ ଏହା ବୋଧହୁଏ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ। କାରଣ ପ୍ରାୟ ସବୁ ସମୟରେ ଗଛରେ ପତ୍ର ରହିଥାଏ ଓ ସହଜରେ ଲକ୍ଷ୍ୟ କରିହୁଏ। ପତ୍ର ମଧ୍ୟ ଅନେକ ଶ୍ରେଣୀର ହୁଏ। କିନ୍ତୁ ସାଧାରଣ ଭାବରେ ଏହା ସବୁଜ ରଙ୍ଗର 'ପର୍ଣ୍ଣ'କୁ ବୁଝାଏ। ସାଧାରଣ ପର୍ଣ୍ଣ ବା ପତ୍ରର ତିନିଟି ଅଂଶ ଥାଏ: *ପତ୍ରମୂଳ* (ଅବପତ୍ର ବା ପିନାଧାର), *ପର୍ଣ୍ଣବୃନ୍ତ* ବା ଡେମ୍ଫ ଓ *ଫଳକ*। ଫଳକ ହେଉଛି ପତ୍ରର ମୁଖ୍ୟ ଅଂଶ। ଏହାର ଆକାର, ଆକୃତି, ଧାରର ରୂପ ଆଦି ଜାଣିଥିଲେ କୌଣସି ଗଛକୁ ସହଜରେ ଚିହ୍ନିହୁଏ। ପତ୍ର ଗୋଟାଳିଆ (ଅଖଣ୍ଡ) ବା ଖଣ୍ଡିତ, ସରଳ ବା ଯୌଗିକ ହୋଇପାରେ।



ପତ୍ରବିନ୍ୟାସ ବା ପତ୍ରଗୁଡିକ କିପରି ସଜାଇ ହୋଇ ରହିଛି ତାହା ମଧ୍ୟ ଗଛ ଚିହ୍ନଟରେ ସାହାଯ୍ୟ କରେ। ଏହାର ପ୍ରକାର ହେଉଛି:

*ଏକାନ୍ତର* - ପ୍ରତି ଗଣ୍ଠିରୁ ମାତ୍ର ଗୋଟିଏ ପତ୍ର ବାହାରେ ଓ ପ୍ରତିଟି ତା'ର ତଳର ପତ୍ରର ଓଲଟା ଦିଗକୁ ରହେ। ଏହାକୁ ସର୍ପିଳ ବା କୁଣ୍ଡଳ ପତ୍ରବିନ୍ୟାସ ମଧ୍ୟ କୁହାଯାଏ।

*ସମ୍ମୁଖୀ* - ପ୍ରତି ଗଣ୍ଠିରୁ ଦୁଇଟି ପତ୍ର ବାହାରି କାଣ୍ଡର ଦୁଇ ପଟକୁ ରହିଥାଏ। ସବୁ ପତ୍ରଯୋଡା ଉପରକୁ ଉପର ରହିପାରେ (ଦ୍ୱିସମ୍ମୁଖୀ ବା ଉପରିପନ୍ନ) ବା ପ୍ରତି ଯୋଡାର ତଳ ବା ଉପର ପତ୍ର ଯୋଡାକୁ ୯୦° କୋଣ କରି ରହିପାରେ (ଚତୁଃସମ୍ମୁଖୀ ବା ଚତୁଃସାରୀ)।

*ଆବର୍ତ୍ତୀ* - ପ୍ରତି ଗଣ୍ଠିରୁ ଦୁଇରୁ ଅଧିକ ପତ୍ର ବାହାରି କାଣ୍ଡର ଚାରିପଟେ ଘେରି ରହିଥାଏ।


ଏକାନ୍ତର


ଆବର୍ତ୍ତୀ


ଚତୁଃସମ୍ମୁଖୀ


ଦ୍ୱିସମ୍ମୁଖୀ



ଗଛବଇଦ, ସୃଜନିକା, ୧୯୯୭

୫. *ଫୁଲ ଓ ତା'ର ପେଣ୍ଡା (ସ୍ତବକ) :* ଆମର ଜଣାଶୁଣା ଅଧିକାଂଶ ଉଭିଦ ସପୁଷ୍ପକ। ଫୁଲ ଗଛର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଯାହାକୁ ନେଇ ତାହାକୁ ଜାଣିହେବ। କିନ୍ତୁ ଅଧିକାଂଶ କ୍ଷେତ୍ରରେ ଗୋଟିକିଆ ଫୁଲର ବର୍ଣ୍ଣନା ଉଭିଦବିଜ୍ଞାନର ବିଶେଷ ଜ୍ଞାନ ଦରକାର କରେ। ସାଧାରଣ ଲୋକଙ୍କ ପାଇଁ ଏହା ବିଶେଷ କାମ ଦିଏନାହିଁ। କିନ୍ତୁ ପୁଷ୍ପବିନ୍ୟାସ ବା ଫୁଲପେଣ୍ଡାର (ସ୍ତବକ)ର ରୂପ ଅଧିକ ସହାୟକ ହୁଏ।

ମୁଖ୍ୟତଃ ତିନି ପ୍ରକାରର ପୁଷ୍ପସ୍ତବକ ଦେଖିବାକୁ ମିଳେ:

*ଅସୀମାକ୍ଷ ବା ରେସିମଧର୍ମୀ, ସସୀମ ଓ ବିଶେଷ ପ୍ରକାରର ସ୍ତବକ।*

*ଅସୀମାକ୍ଷ:* ଏହି ଶ୍ରେଣୀର ସ୍ତବକରେ ପୁଷ୍ପଅକ୍ଷର ବଢିବା ବନ୍ଦ ହୁଏନାହିଁ। ସ୍ତବକର ତଳ ଭାଗରେ ପୁରୁଣା ପାକଲ ଫୁଲ ଥାଏ ଓ ଉପରକୁ କଢ଼ ଓ ନୂଆ ଫୁଲ ଫୁଟିଗ୍ଲେ।

ଡେମ୍ଫ ଥିବା ଫୁଲର ପେଣ୍ଡାକୁ ଅସୀମ ସ୍ତବକ ଓ ବିନା ଡେମ୍ଫ(ଅବୃନ୍ତ) ଫୁଲର ପେଣ୍ଡାକୁ *ଶୂକୀ ସ୍ତବକ* କୁହାଯାଏ।

କଦଳୀ ଭଣ୍ଡା ଏକ ବିଶେଷ ଧରଣର ଶୂକୀ ସ୍ତବକ। ଏହାକୁ ଛତ ସ୍ତବକ କୁହାଯାଏ।



ଅସୀମାକ୍ଷ ସ୍ତବକ



ଶୂକୀ ସ୍ତବକ

ଆଉ ଗୋଟିଏ ବିଶେଷ ଅସୀମାକ୍ଷ ସ୍ତବକ ହେଉଛି *ମୌଳି ସ୍ତବକ*। ଏଥିରେ ପୁଷ୍ପ ଅକ୍ଷଟି ସଳଖ ଦଣ୍ଡ ନହୋଇ ଗୋଟିଏ ଛୋଟ ଫୁଲା ରୂପରେ ଥାଏ। ଅତି ଛୋଟ ଗୋଟିକିଆ ଫୁଲ (ପୁଷ୍ପକ)ଗୁଡିକ ଏହି ଫୁଲା ଅଂଶରେ ଖୁନ୍ଦି ହୋଇ ଲାଗି ରହିଥାଏ। ଏହି ପୁରା ସ୍ତବକ ବା ପେଣ୍ଡାଟି ଗୋଟିଏ ଫୁଲ ଭଳି ମନେ ହୁଏ। ସୂର୍ଯ୍ୟମୁଖୀ ଫୁଲ ମୌଳି ସ୍ତବକର ଗୋଟିଏ ଉଦାହରଣ।



ସୂର୍ଯ୍ୟମୁଖୀର ମୌଳିସ୍ତବକ



କଦଳୀ ଭଣ୍ଡା (ଛଦସ୍ତବକ)

*ସସୀମ ସ୍ତବକ:* ଏଥିରେ ପୁଷ୍ପଅକ୍ଷର ଅଗରେ ଗୋଟିଏ ଫୁଲ ଫୁଟେ ଓ ଅକ୍ଷଟିର ବଢିବା ବନ୍ଦ ହୋଇଯାଏ। ଏହାପରେ ମୂଳ ଅକ୍ଷରୁ ଶାଖା ବାହାରି ଫୁଲ ଧରେ।




କିଛି ସସୀମ ସ୍ତବକ

ଏହି ଦୁଇ ପ୍ରଧାନ ଶ୍ରେଣୀ ଭିତରେ ଅନେକ ଅଲଗା ରୂପ ରହିଛି। ଏହାଛଡ଼ା କେତେକ ବିଶେଷ ଶ୍ରେଣୀର ସ୍ତବକ ମଧ୍ୟ ଦେଖାଯାଏ। ଏଥିରୁ ଡିମିରିର ଉଡୁମ୍ବରୀ ସ୍ତବକ (ପୃ ୩୯ ) ଗୋଟିଏ।

୬. *ଫଳ:* ଉଦ୍ଭିଦବିଜ୍ଞାନର ଶ୍ରେଣୀବିଭାଗ ଅପେକ୍ଷା ଉପଯୋଗିତା ବା ସ୍ୱାଦକୁ ନେଇ ମଣିଷ ଫଳକୁ ବେଶି ଜାଣିଛି। ତଥାପି ଗଛର ସୂଚନା ଦେବା ପାଇଁ ଫଳର ବିଭିନ୍ନତା ଅନେକ ସାହାଯ୍ୟ କରେ। କିନ୍ତୁ ଏହାର ବିବିଧତାର ଆଲୋଚନା ଏଠାରେ ଅତି ଜରୁରୀ ନୁହେଁ ଏବଂ ସମ୍ଭବ ମଧ୍ୟ ନୁହେଁ।

# ଉଦ୍ଭିଦର ବିଜ୍ଞାନ ନାମ

ଏହି ବହିରେ ପ୍ରତି ଗଛର ଗୋଟିଏ ବିଜ୍ଞାନ ନାମ ଦିଆଯାଇଛି। କିଟିମିଟିଆ ଲାଗୁଥିଲେ ମଧ୍ୟ ଏହା ପଛରେ ଗୋଟିଏ ନିର୍ଦ୍ଦିଷ୍ଟ ଧାରା ରହିଛି। ସେହି ଧାରାକୁ ବୁଝିଲେ କୌଣସି ଉଦ୍ଭିଦର ନାମରୁ ତାହା ବିଷୟରେ ଅନେକ କିଛି ଜାଣିହେବ। ଆହୁରି ମଧ୍ୟ ଏହି ନାମକରଣ ଧାରା ଏକ ଆନ୍ତର୍ଜାତିକ ବ୍ୟବସ୍ଥା, ତେଣୁ ଏହା ଜରିଆରେ ପୃଥିବୀ ସାରା ଯୋଗାଯୋଗ ରଖିବା ସମ୍ଭବ।

ପ୍ରାଣୀ ବା ଉଦ୍ଭିଦ ସବୁ ଜୀବଙ୍କର ନାମକରଣରେ ଲାଗୁଥିବା ଏହି ବ୍ୟବସ୍ଥାକୁ *ଦ୍ବିନାମ ଧାରା* କୁହାଯାଏ। ଏଥିରେ ନାମସବୁର ଦୁଇଟି ଭାଗ ଥାଏ - ପ୍ରଥମଟି *ପ୍ରଜାତି* ଓ ଦ୍ୱିତୀୟଟି *ଜାତିର* ନାମ। ପ୍ରତ୍ୟେକ ସ୍ୱତନ୍ତ୍ର ପ୍ରକାରର ଜୀବ ଗୋଟିଏ ଅଲଗା ଜାତିର ବୋଲି ଧରାଯାଏ। ଗୁଣ ଧର୍ମରେ ବିଶେଷ ମେଳ ଖାଉଥିବା ଜାତିର ଜୀବଙ୍କୁ ଗୋଟିଏ ପ୍ରଜାତିରେ ରଖାଯାଏ। କେତେ ଗୁଣରେ ମିଶୁଥିବା ପ୍ରଜାତିଗୁଡିକୁ ଗୋଟିଏ ବଂଶର ଜୀବ ଭାବରେ ଗଣାଯାଏ। ଜୀବ ଚିହ୍ନଟ ପାଇଁ ଏହି ତିନି ମୁଖ୍ୟ ବିଭାଗର ସୂଚନା ପ୍ରତି ନାମ ସହିତ ରହେ। ଏହାଛଡା କେତେ କ୍ଷେତ୍ରରେ ନାମକରଣ କରିଥିବା ବିଜ୍ଞାନୀଙ୍କର ନାମ ମଧ୍ୟ ସଂକ୍ଷିପ୍ତ ରୂପରେ ଦିଆଯାଇଥାଏ।

ଜୀବଜଗତର ବର୍ଣ୍ଣନା ପାଇଁ ଆଉ କେତୋଟି ବିଭାଗ ମଧ୍ୟ ରଖାଯାଏ। ପାଖାପାଖି ଗୁଣର ବଂଶଗୁଡିକୁ ନେଇ ଗୋଟିଏ ବର୍ଗ, କେତେକ ବର୍ଗକୁ ନେଇ ଗୋଟିଏ ଶ୍ରେଣୀ, କେତେ ଶ୍ରେଣୀକୁ ମିଶାଇ ଗୋଟିଏ ବିଭାଗ ବା ପର୍ବ ଏବଂ ଶେଷରେ ଏହି ପର୍ବଗୁଡିକୁ ନେଇ ଦୁଇଟି ଜଗତ (ପ୍ରାଣୀ ଓ ଉଦ୍ଭିଦ) ବର୍ଣ୍ଣନା କରାଯାଇଥାଏ।

# ସହାୟକ ଗ୍ରନ୍ଥସୂଚୀ

ପରିଶିଷ୍ଟ ୨


କ. ଉଦ୍ଭିଦ ଚିହ୍ନଟ ପାଇଁ କିଛି ସାଧାରଣ ବହି:

୧. ଉଦ୍ଭିଦ ପରିଚୟ, ନିରଞ୍ଜନ ମିଶ୍ର ଓ ମଳୟ କୁମାର ମିଶ୍ର, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର, ୧୯୮୫।
୨. ଉଦ୍ଭିଦ ବିଜ୍ଞାନ ପ୍ରବେଶ, ବଂଶୀଧର ପରିଜା, ଦୀନବନ୍ଧୁ ମିଶ୍ର, ସତ୍ୟନାରାୟଣ ପଟ୍ଟନାୟକ, ବସନ୍ତ କୁମାର ନନ୍ଦ ଓ ଲକ୍ଷ୍ମଣ କୁମାର ମହାପାତ୍ର, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୨।
୩. ପ୍ରାତିପାଇଁ ପରିଚୟ, ବୃକ୍ଷ ଓ ଜୀବର ବନ୍ଧୁ ପରିଷଦ, କେଶରପୁର, ଜି. ନୟାଗଡ଼, ୧୯୯୧।
୪. *Our Tree Neighbours*, C. S. Venkatesh, NCERT, New Delhi, 1976.
୫. *Field Guide to Common Trees of India*, P. V. Bole & Y. Vghani, WWF - Oxford University Press, Bombay, 1986.
୬. *The flora of the Tamilnadu carnatic*, vols.1-4, K. M. Matthew, The Rapinat Herbarium, Tiruchirapalli, 1981-88.

ଖ. ବନୌଷଧି ବିଷୟରେ କିଛି ବହି:

୧. *ଉଦ୍ଭିଦର ଔଷଧିଗୁଣ*, ପ୍ରଥମ ଓ ଦ୍ୱିତୀୟ ଭାଗ, ହରିହର ପଟ୍ଟନାୟକ, ବିଦ୍ୟାପୁରୀ, କଟକ, ୧୯୯୪-୯୬।

୨. *ବୃକ୍ଷଲତାର ଔଷଧିଗୁଣ*, କମଳକୁମାରୀ ପଟ୍ଟନାୟକ ଓ ପ୍ରଜ୍ଞା ଏଲିନାର ଭାଲେଣ୍ଟିନା, ବିଦ୍ୟାପୁରୀ, କଟକ, ୧୯୯୬।
୪. *ଓଡ଼ିଶାର ଔଷଧ ବୃକ୍ଷ*, ପ୍ରମୋଦ କୁମାର ମହାପାତ୍ର, କଟକ, ୧୯୮୯।
୫. *ଦ୍ରବ୍ୟଗୁଣ କଳ୍ପଦ୍ରୁମ*, ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ, ଦେବୀ ପ୍ରସାଦ ତ୍ରିପାଠି ଶର୍ମା, ବେଲଗୁଣ୍ଠା (ଗଞ୍ଜାମ), ୧୯୭୯-୯୧
୬. *Medicinal Plants*, S. K. Jain, National Book Trust, India, New Delhi, 1968.
୭. *The Use of Traditional Medicine in Primary Health Care*, WHO/AITBS Publishers, Delhi, 1992.
୮. *Home Remedies with Materia Medica*, 2nd Ed., Fr. S. Melookunnel, HAFA Publications, Secunderabad, 1995.
୯. *Common Healing Herbs*, Central Research Institute (Ayurveda), Bhubaneswar, CCRAS, New Delhi, 1983.
୧୦. *Medicinal Plants Useful in Primary Health Care*, vols. 1 & 2, LSPSS, Coimbatore.
୧୧. *Ayurveda Unravelled*, S.Dahanukar & U. Thatte, National Book Trust, India, New Delhi, 1996.
୧୨. *The Treatise on Indian Medicinal Plants*, Vols.1-4, A. Chatterjee & S. C. Pakrashi, P.I.D.(CSIR), New Delhi, 1991-95.
୧୩. *Indian Medicinal Plants*, 2nd Ed., Vols. 1-4, K. R. Kirtikar & B. D. Basu, Periodical Experts Book Agency, Delhi, 1933.

ଶେଷକଥା . . .

ଦୁଇଟି ଛୋଟ ଗଛର କଥା । ଶିଶୁ, ଶୈଶବ ଓ ଶିକ୍ଷାର ଚର୍ଚ୍ଚା ସହିତ ଏ ଦୁଇଟି ବିଶେଷ ଭାବରେ ଯୋଡ଼ା । ଅନେକ ସମୟରେ ଆମେ ଶୁଣିଥାଏ — "ତୁଳସୀ ଦୁଇ ପତ୍ରରୁ ବାସେ ଓ ବିଛୁଆତି ଦୁଇପତ୍ରରୁ କୁଣ୍ଡାଇ ହୁଏ ।" ଆଉ ବୁଝିଥାଏଁ ଯେ କିଛି ପିଲା ମୂଳରୁ ଭଲ (ତୁଳସୀ) ଓ ଆଉ କିଛି ଖରାପ (ବିଛୁଆତି) । ତୁଳସୀର ଗୁଣ କଥା କିଛି କହିବା ଦରକାର ନାହିଁ । କିନ୍ତୁ ବିଛୁଆତି କ'ଣ ସତରେ ଅଗୁଣରେ ଭରା ? ଋଷି ଜୀବକଙ୍କ କଥା ମନରେ ରଖି ଖୋଜିବାର ଫଳ ଏଠାରେ ରହିଛି । ହଁ, ବିଛୁଆତିର ମଧ୍ୟ ଔଷଧ ଗୁଣ ଅଛି !

ବୟସ୍କମାନେ ଏଥିରୁ ନିଶ୍ଚୟ କିଛି ଶିଖିବାର କଥା । ତାହା ହେଉଛି - ଗୁଣ ଚିହ୍ନିବା ପାଇଁ ଗୁଣି ହେବାକୁ ପଡ଼ିବ । ଖୁଜୁବୁଜିଆ ପିଲାର ଜୀବନଭରା ଚଞ୍ଚଳତା ଯଦି ତା'ର ବିଛୁଆତିପଣ ହୁଏ, ତେବେ ତାକୁ ବୁଝି ତା'ର ଶକ୍ତିକୁ ଠିକ୍ ଦିଗରେ ବାଟେଇବାର ଦାୟିତ୍ୱ ବୟସ୍କଙ୍କର । କିନ୍ତୁ ଆଜି ଶିକ୍ଷା ନାମରେ ଯେଉଁ ବଛାବଛିର ଦଉଡ଼ ଚାଲିଛି ସେଥିରେ ପିଲା ପାଇଁ ଏତେ ଚିନ୍ତା କରିବାର ଧୈର୍ଯ୍ୟ କାହାର ନାହିଁ । ଯେଉଁ ପିଲାମାନେ 'ତୁଳସୀ' ଛାଞ୍ଚରେ ଖାପ ନଖାଇଲେ ସେମାନଙ୍କୁ 'କିଛି ନୁହନ୍ତି' ଉପାଧି ଦେଇ ଆଡେଇ ଦିଆଯାଉଛି । ଏମାନେ ଯେ ସଂଖ୍ୟାରେ ଢେର ଅଧିକ ସେକଥା ବିଚାରକୁ ଆସୁନାହିଁ । ସଂଖ୍ୟାଧିକ ପିଲାଙ୍କର ଗୁଣକୁ ଚାହିଁ ଛାଞ୍ଚ ବଦଳାଯାଉ ନାହିଁ ।

ଅନାବନା ଅଗଛାଙ୍କର ଗୁଣ ଗାଉଥିବା ଏହି ବହିଟି ହୁଏତ କିଛି ବୟସ୍କଙ୍କ ମନରେ 'ବିଛୁଆତି'ଙ୍କ ପାଇଁ ଦରଦ ଆଣିଦେବ ଓ ଆଜିର ଶିକ୍ଷା ବ୍ୟବସ୍ଥା ଉପରେ କିଛି ପ୍ରଭାବ ପକାଇବ ।

## ସୃଜନିକାର ମୁଖ୍ୟ ପ୍ରକାଶନ:

ଶିକ୍ଷା-ବିଜ୍ଞାନ-ବିକାଶ ଆଧାରିତ ସାଧନ ପତ୍ରିକା *ବିଜ୍ଞାନ ତରଙ୍ଗ*

ଗ୍ରାହକ ଦେୟ: ବାର୍ଷିକ: ସାଧାରଣ: ଟ୬୦.୦୦

ଅନୁଷ୍ଠାନ/ସହଯୋଗୀ: ଟ୧୦୦.୦୦

ଆଜୀବନ: ଟ୧୦୦୦.୦୦ (ଏକ ହଜାର ଟଙ୍କା)

## ସୃଜନିକାଠାରୁ ମିଳି ପାରୁଥିବା କିଛି ପୁସ୍ତକ...

### କ. ସୃଜନିକା ଦ୍ୱାରା ପ୍ରକାଶିତ

| | | |
|---|---|---|
| ୧. | ଆସ ତାରା ଦେଖିବା | ଟ୨୫.୦୦ |
| ୨. | ଆମ ମନର ଗୀତ | ଟ ୮.୦୦ |
| ୩. | କାହିଁକି ଭାଇ କାହିଁକି ? | ଟ୨୫.୦୦ |
| ୪. | କାଗଜ ଭଙ୍ଗାର ମଜା | ଟ୧୨.୦୦ |
| ୫. | ଚନ୍ଦ୍ର ଅଭିଯାନ | ଟ ୫.୦୦ |
| ୬. | ଛାଇ ଆଲୁଅର ଖେଳ | ଟ ୨.୦୦ |
| ୭. | ବିଶ୍ୱର ରୂପ | ଟ ୨.୦୦ |

### ଖ. ସୃଜନିକା ଦ୍ୱାରା ବିତରିତ

| | | |
|---|---|---|
| ୧. | ଦିବାସ୍ୱପ୍ନ | ଟ୨୫.୦୦ |
| ୨. | ତୋତୋ-ଚାନ୍ | ଟ୩୮.୦୦ |
| ୩. | ଜଣେ ଶିକ୍ଷକଙ୍କୁ ଚିଠି | ଟ୬୦.୦୦ |
| ୪. | ଜୀବନ ବିଦ୍ୟାଳୟ | ଟ୩୫.୦୦ |
| ୫. | ଜଙ୍ଗଲ ଚିଠି | ଟ୫୦.୦୦ |

ଏବଂ ଶିକ୍ଷା, ବିଜ୍ଞାନ ଓ ବିକାଶ ଉପରେ ଓଡ଼ିଆ ଓ ଇଂରାଜୀରେ କିଛି ବଛା ବହି।

ଏସବୁ କେବଳ **ରବିବାର** ଦିନ ସୃଜନିକା କେନ୍ଦ୍ରରେ ମିଳି ପାରିବ।

## ସୃଜନିକା ଓ ବିଜ୍ଞାନ ତରଙ୍ଗ:

ସୃଜନିକା ବିଜ୍ଞାନ ଓ ଶିକ୍ଷା ଦିଗରେ କାମ୍ କରୁଥିବା ଏକ ଆଗ୍ରହୀ ଦଳ। ନିଜ ଗ୍ଭରିପାଖର ଜିନିଷ ଓ ଘଟଣା ପ୍ରତି ଆଗ୍ରହ ଓ କୌତୁହଳ ବଢାଇବା. ମନରେ ପ୍ରଶ୍ନ ଆଣିବା, ଉତ୍ତର ଖୋଜାରେ ସାଥି ହେବା ଆଦି କାମସବୁରେ ହାତ ମିଳାଇବା *ସୃଜନିକା*'ର ଲକ୍ଷ୍ୟ। ଏହାର କାମ ଭିତରେ ରହିଛି: ଶିକ୍ଷକ କର୍ମଶାଳା, ବିଜ୍ଞାନ ମେଳା, ବିଜ୍ଞାନ ଖେଳନା ତିଆରି ଓ ବିତରଣ, ବିଶେଷ ପୁସ୍ତକ ପ୍ରକାଶନ ଓ ବଣ୍ଟନ।

ଏଭଳି ଅନେକ ବିଷୟରେ ଅଧିକ କାମ ଓ ଆଲୋଚନା ପାଇଁ *ବିଜ୍ଞାନ ତରଙ୍ଗ* ପତ୍ରିକା ଏକ ନିୟମିତ ମାଧ୍ୟମ। ବୈଜ୍ଞାନିକ ଦୃଷ୍ଟିକୋଣ, ମୌଳିକ ଚିନ୍ତାଧାରା ଓ ସୃଜନଶୀଳତାର ବିକାଶ, ପିଲାମାନଙ୍କ ମନରେ ବିଜ୍ଞାନ ପ୍ରତି ଆଗ୍ରହ ସୃଷ୍ଟି କରିବା, ବଡମାନଙ୍କୁ ବିଜ୍ଞାନର ବିଭିନ୍ନ ଦିଗ ଓ ସାମାଜିକ ପ୍ରଭାବ ବିଷୟରେ ସଚେତନ କରିବା, ଶିକ୍ଷା ବିଶେଷ କରି ବିଜ୍ଞାନ ଶିକ୍ଷାର ନୂଆ ଦିଗ ଖୋଜିବା ଓ ତାକୁ ନିତିଦିନିଆ ଜୀବନ ସହ ଯୋଡିବାର ଚେଷ୍ଟାରେ ଏହି ପତ୍ରିକା ଏକ ସାଧନ ସାମଗ୍ରୀର ଭୂମିକା ନିଏ।

ବିଜ୍ଞାନ ତରଙ୍ଗର ସହଯୋଗୀ ହେବାକୁ ଓ ସୃଜନିକାର କାମ ସବୁରେ ଭାଗିଦାର ହେବାକୁ ଆମର ସାଦର ନିମନ୍ତ୍ରଣ ଏବଂ ଅନୁରୋଧ।

(କିଛି ବିଶେଷ ବହିର ତାଲିକା ପାଇଁ ମଲାଟର ଭିତର ପଟ ଦେଖନ୍ତୁ।)

ପଅର ଟଙ୍କା

# ସୃଜନିକା: କ'ଣ ଓ କାହିଁକି

ସମାଜରେ ବୈଜ୍ଞାନିକ ଦୃଷ୍ଟିକୋଣ, ମୌଳିକ ଚିନ୍ତାଧାରା ଓ ସୃଜନଶୀଳତାର ବିକାଶ, ବିଜ୍ଞାନକୁ ଉଦ୍ଦୀପନାମୂଳକ କରିବା ଏବଂ ବିଜ୍ଞାନର ବିଭିନ୍ନ ଦିଗ ଓ ସାମାଜିକ ପ୍ରଭାବ ବିଷୟରେ ସଚେତନ କରିବା, ଶିକ୍ଷା, ବିଶେଷ କରି ବିଜ୍ଞାନ ଶିକ୍ଷାର ନୂଆ ଦିଗ ଖୋଜି ତାକୁ ନିତିଦିନିଆ ଜୀବନ ସହ ଯୋଡ଼ିବା ହେଉଛି ସୃଜନିକାର ଲକ୍ଷ୍ୟ ।

ଏହି ଲକ୍ଷ୍ୟକୁ ବାସ୍ତବ ରୂପ ଦେବା ପାଇଁ ଆମର ବିଭିନ୍ନ କାର୍ଯ୍ୟକ୍ରମ ଭିତରେ ରହିଛି ନିୟମିତ ପତ୍ରିକା ବିଜ୍ଞାନ ତରଙ୍ଗର ପ୍ରକାଶନ । ତା' ସହିତ ଶିକ୍ଷା ଓ ବିକାଶ ଉପରେ ବିଭିନ୍ନ ବହି ପ୍ରକାଶନ, ଶିକ୍ଷକ କର୍ମଶାଳା, ପିଲାଙ୍କ ଶିବିର, ବିଜ୍ଞାନ ଖେଳନା ପ୍ରସ୍ତୁତି ଓ ବିତରଣ ଆଦି । ପିଲାଙ୍କ ସହ କାମ କରିବା ପାଇଁ ଏହି ବହିଗୁଡ଼ିକ ଶିକ୍ଷକ, ଶିକ୍ଷୟିତ୍ରୀ ତଥା ବିଜ୍ଞାନ କର୍ମୀଙ୍କ ପାଇଁ ସାଧନ ପୁସ୍ତିକା ଭାବରେ ବ୍ୟବହୃତ ହୋଇପାରିବ ।